ନେହେରୁ ବାଲ ପୁସ୍ତକାଳୟ

# ବହୁତ ଦିନ ତଳେ

ଦ୍ୱିତୀୟ ଭାଗ



ନ୍ୟାସନାଲ ବୁକ ଟ୍ରଷ୍ଟ, ଇଣ୍ଡିଆ

ନେହେରୁ ବାଲ ପୁସ୍ତକାଳୟ -26

# ବହୁତ ଦିନ ତଳେ...

[ ଦ୍ୱିତୀୟ ଭାଗ ]

ଏମ୍. ଭେଙ୍କ୍ସି ଓ ପି. ଏମ୍. ଯୋଶୀ

ଚିତ୍ର

ପୁଲକ ବିଶ୍ୱାସ

ଅନୁବାଦ

ଜିତେନ୍ଦ୍ର ନାରାୟଣ ପଟ୍ଟନାୟକ

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ନୂଆଦିଲ୍ଲୀ



First Edition : 1977 (Saka 1899)
Second Edition : 1983 (Saka 1905)



Once Upon a time, Part-II (*Oriya*)

Rs. 2.50

PUBLISHED BY THE DIRECTOR, NATIONAL BOOK TRUST, INDIA
NEW DELHI-110016 AND PRINTED AT JANTY PRINTING WORKS,
JAMA MASJID, DELHI-110006

# କାର୍ଲ : ଏକ ମହାନ୍ ବୌଦ୍ଧବିହାର

**ଜୀମୂତ ଓ ଜଙ୍ଗଲର ସନ୍ନ୍ୟାସୀ**

ପ୍ରାୟ ଦୁଇ ହଜାର ବର୍ଷ ପୂର୍ବେ ପଶ୍ଚିମ ଘାଟର ଏକ ବଡ଼ ପାହାଡ଼—ଯାହାର ଆଧୁନିକ ନାମ କାର୍ଲ—ତାର ଠିକ୍ ପାଦଦେଶରେ ବାଲୁରିକା ନାମରେ ଗୋଟିଏ ଗାଁ ଥିଲା। କାର୍ଲର ଗୁମ୍ଫାକୁ ଯିବାର ରାସ୍ତା ଏହିଠାରୁ ଆରମ୍ଭ ହୁଏ।

ସେତେବେଳେ ଦାକ୍ଷିଣାତ୍ୟରେ ଅନେକ ଘଞ୍ଚ ଜଙ୍ଗଲ ଥିଲା। ହିଂସ୍ର ଜନ୍ତୁମାନେ ଲୋକମାନଙ୍କ ଘରର ଖୁବ୍ ନିକଟରେ ଚଲାବୁଲା କରୁଥିଲେ। ସାତବାହନ ବଂଶର ରାଜାମାନେ ଦୃଢ଼ ଶାନ୍ତିଶୃଙ୍ଖଳା ରକ୍ଷା କରିପାରୁଥିବାରୁ ଏହି ଜଙ୍ଗଲ ଗ୍ରାମମାନଙ୍କର ବେଶ୍ ଉନ୍ନତି ହୋଇପାରିଥିଲା।

ଉତ୍ତର ଭାରତର ସମତଳ ଅଞ୍ଚଳରେ ଯେପରି ଭଲ ରାସ୍ତା ଥିଲା, ଏହି ପାର୍ବତ୍ୟଅଞ୍ଚଳର ରାସ୍ତା ସେପରି ଭଲ ନ ଥିଲା। ପାହାଡ଼ ପାହାଡ଼ ହୋଇ ପାହାଡ଼ଗୁଡ଼ିକ ଖୁବ୍ ଉଚ୍ଚକୁ ମୁଣ୍ଡ



ଚେନଥିଲେ । ପାହାଡ଼ଗୁଡ଼ିକ ଖୁବ୍ ଉଚ୍ଚା ଥିବାରୁ ଚଢ଼ିବା ବଡ଼ କଷ୍ଟକର ଥିଲା । ସେଇ ଅଳ୍ପ କେତୋଟି ସଂକୀର୍ଣ୍ଣ ଆବଡ଼ା ଖାବଡ଼ା ରାସ୍ତା ଥିଲା, ସେଥିରେ ମାଲବାହୀ ପଶୁମାନେ ଯିବା ଆସିବା କରୁଥିଲେ ।

କାରଲ ଗୁମ୍ଫା ତଳେ ଥିବା ଏହି ଗାଆଁଟିରେ ଦ୍ୱିତୀୟ ଖ୍ରୀଷ୍ଟାବ୍ଦରେ ଜୀମୂତ ନାମକ ଏକ ଛେଳିଜଗୁଆଳ ପିଲା ବାସକରୁଥିଲା । ଏହି ଗାଁର କୁଡ଼ିଆଗୁଡ଼ିକ କୁଟା ଓ ଝାଟିମାଟିରେ ତିଆରି ହୋଇଥିଲା । ଶାସକମାନେ ଶତ୍ରୁ ଓ ରାଜକର୍ମଚାରୀମାନଙ୍କ ହାତରୁ ଲୋକଙ୍କୁ ଯେତେଦିନ ରକ୍ଷା କରିଥିଲେ, ସେତେଦିନ ଯାଏଁ ସେମାନେ ବେଶ୍ ସୁଖୀ ଓ ପରିଶ୍ରମୀ ଥିଲେ ।

କିନ୍ତୁ ଜୀମୂତର ଜୀବନରେ କିଛି ସୁଖ ନ ଥିଲା । ପିଲାଦିନରୁ ତାର ବାପା ମା' ମରିଯାଇଥିଲେ । ଗାଁ ମୁଣ୍ଡର ଗୋଟିଏ କୁଡ଼ିଆରେ ତା ଦାଦା ଓ ଖୁଡ଼ୀଙ୍କ ସହିତ ସେ ରହୁଥିଲା । ରୁକ୍ଷ ଜମିରେ ପ୍ରାୟ ଫସଲ ଭଲ ହେଉ ନ ଥିବାରୁ ଛେଳିଗୋଠ ହିଁ ତା ଦାଦାର ପ୍ରଧାନ ଅବଲମ୍ବନ ଥିଲା । ତାର ଖୁଡ଼ୀ ଖୁବ୍ ରାଗୀ ଥିଲେ ଏବଂ ଜୀମୂତ ପ୍ରତି ଅନେକ ସମୟରେ ଖରାପ ବ୍ୟବହାର କରୁଥିଲେ । ଜୀମୂତର ଦାଦା ନାଲାୟକ ଓ କଳିହୁଡ଼ା ହୋଇ-ଥିବାରୁ ସମତଳ ଅଞ୍ଚଳର ଚରଭୂଇଁରେ ତାର କୌଣସି ଭାଗ ନ ଥିଲା । ତେଣୁ ସବୁଦିନ ବଡ଼ିସକାଳୁ ଜୀମୂତ ପାହାଡ଼ ଉପର ଚରଭୂଇଁକୁ ଛେଳି ନେଇ ଯାଉଥିଲା ଆଉ ସନ୍ଧ୍ୟାବେଳକୁ ଫେରିଆସୁଥିଲା । ତାର ସାରାଦିନର ଖାଦ୍ୟ ଥିଲା ଖଣ୍ଡିଏ ମୋଟା ବାଜରା ରୋଟି ।

ପାହାଡ଼ ତଳ ନଦୀ ପଟିରେ ଥିବା ଉପତ୍ୟକାରେ ଜୀମୂତ କିଛି ସମୟ ଅଟକିଯାଏ । ସେଠାରେ ଗୋଟିଏ ଓସାରିଆ ଗୁମ୍ଫାରେ ବୌଦ୍ଧ ବିହାରଟିଏ ଥିଲା । ଏହି ସ୍ଥାନରେ ପ୍ରାୟ ତିନିଶହ ବର୍ଷ ତଳେ ଲୋକମାନେ ବସବାସ କରୁଥିଲେ । ଏହି ଗୁମ୍ଫାର ବାହାରେ ଥିବା ନୃରେନି ରାଜକୀୟ ସ୍ତମ୍ଭ ଏବଂ ପ୍ରବେଶଦ୍ୱାରରେ ଥିବା ତିନି-ପାହାଚ ବିଶିଷ୍ଟ ଅର୍ଦ୍ଧଗୋଲାକୃତି ତୋରଣକୁ ଅନାଇ ରହିବାକୁ ଜୀମୂତକୁ ବେଶ୍ ଭଲଲାଗୁଥିଲା । ଗୁମ୍ଫା ଭିତରେ ଓ ବାହାରେ ସନ୍ନ୍ୟାସୀମାନେ ଧ୍ୟାନରେ ବସୁଥିଲେ ଓ ଚଲବୁଲ କରୁଥିଲେ । ସେମାନେ ଗେରୁଆ ଲୁଗା ପିନ୍ଧୁଥିଲେ ଓ ମୁଣ୍ଡରେ ଛୋଟ ଛୋଟ ବାଳ ରଖୁଥିଲେ । ବେଳେ ବେଳେ "ବୁଦ୍ଧଂ ଶରଣଂ ଗଚ୍ଛାମି, ଧର୍ମଂ ଶରଣଂ ଗଚ୍ଛାମି, ସଂଘଂ ଶରଣଂ ଗଚ୍ଛାମି" ମନ୍ତ୍ର ଧ୍ୱନି ମଧ୍ୟ ଜୀମୂତ ଶୁଣିପାରୁଥିଲା ।

ଏହି ସନ୍ନ୍ୟାସୀଙ୍କ ଭିତରୁ ଜଣେ ବୃଦ୍ଧ ସନ୍ନ୍ୟାସୀ ଜୀମୂତର ପିଠି ଥାପୁଡ଼ାଇ ତାକୁ ଆଶୀର୍ବାଦ କରୁଥିଲେ । ଆଶ୍ରମର ନିତିଦିନ ଘଟଣାବଳୀ ଜୀମୂତ ମନରେ ଆଗ୍ରହ ଓ ଉତ୍କଣ୍ଠା ସୃଷ୍ଟି କରୁଥିଲା ।



ଏକ ବିରାଟ ଅନ୍ଧାର କୋଠରି, ଛାତ ସ୍ତମ୍ଭ ଆଉ ସେଥିରେ ସ୍ତ୍ରୀ, ପୁରୁଷ, ଜନ୍ତୁ ଓ ଗଛପତ୍ରର ଚିତ୍ର—ଏସବୁ ଦୃଶ୍ୟ ଜୀମୂତ ମନରେ ଅନେକ ପ୍ରଶ୍ନ ସୃଷ୍ଟି କରୁଥିଲା । ଯେତେବେଳେ ବୃଦ୍ଧ ସନ୍ନ୍ୟାସୀ ମଧୁସୂଦନ ତାଙ୍କୁ ଆଶୀର୍ବାଦ କରିବା ପାଇଁ ଅଟକୁଥିଲେ, ସେତେବେଳେ ଜୀମୂତ ତାଙ୍କୁ ଅନେକ ପ୍ରଶ୍ନ ପଚାରିବାକୁ ଚାହୁଁଥିଲା; କିନ୍ତୁ ସେ ସାହସ ସଞ୍ଚୟ କରି ପଚାରିବାବେଳକୁ ବୃଦ୍ଧ ସନ୍ନ୍ୟାସୀ ଚାଲିବା ଆରମ୍ଭ କରିଦେଉଥିଲେ ।

ଏହା ସମ୍ରାଟ ଅଶୋକଙ୍କ ରାଜତ୍ୱର ପ୍ରାୟ ଦୁଇ ଶତାବ୍ଦୀ ପରର ଘଟଣା । ବିଭିନ୍ନ ଧର୍ମ ଅନୁଷ୍ଠାନ ଜରିଆରେ ସମ୍ରାଟ୍ ଅଶୋକଙ୍କ ରାଜ୍ୟସାରା ବୁଦ୍ଧଙ୍କର ବାଣୀ ପ୍ରଚାରିତ ହୋଇଥିଲା । ବିଭିନ୍ନ ଅଞ୍ଚଳରେ ଥିବା ତାଙ୍କର ବନ୍ଧୁ ରାଜାମାନଙ୍କ ପାଖରେ ମଧ୍ୟ ଏହି ବାଣୀ ପହଞ୍ଚିଥିଲା । ଏହା ଫଳରେ ଚାରିଆଡ଼େ ବୌଦ୍ଧ ବିହାରମାନ ଗଢ଼ି ଉଠିଥିଲା ।

ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀଠାରୁ ବୌଦ୍ଧ ଭିକ୍ଷୁମାନେ ବିଭିନ୍ନ ପାହାଡ଼ କାଟି ନିଜ ନିଜର ଆରାଧନା ସ୍ଥାନ ନିର୍ମାଣ କରୁଥିଲେ । ପ୍ରତ୍ୟେକ ଗୁମ୍ଫା ଦପଥର କେନ୍ଦ୍ରସ୍ଥାନରେ ଚୈତ୍ୟ ବା

ମୁଖ୍ୟ ଆରାଧନା କୋଠରି ତିଆରି ହୋଇଥିଲା । ଏହି କୋଠରି ପାଖରେ ବୁଦ୍ଧଙ୍କ ଦେହାବଶେଷର ଯେ କୌଣସି ଅଂଶ ପୋତା ହୋଇ ସେହି ସ୍ଥାନରେ ଏକ ସ୍ତୂପ ନିର୍ମିତ ହେଉଥିଲା । ଦାକ୍ଷିଣାତ୍ୟର ସବୁ ବୌଦ୍ଧ ବସତି ମାନଙ୍କ ଭିତରେ କାର୍ଲି ଥିଲା ସବୁଠାରୁ ସୁନ୍ଦର ଓ ସମୃଦ୍ଧ ।

ଏହି ପାର୍ବତ୍ୟ ବସତି ଗୁଡ଼ିକରେ ଲୋକେ ପୂଜାକରିବା ପାଇଁ ଗୋଟିଏ ମନ୍ଦିର; ଭିକ୍ଷୁମାନଙ୍କ ରହିବା ପାଇଁ ଗୋଟିଏ ବିହାର ଏବଂ ବୌଦ୍ଧଧର୍ମର ପ୍ରଚାର ପାଇଁ ଗୋଟିଏ ଶିକ୍ଷାନୁଷ୍ଠାନ ରହୁଥିଲା । ଯୁବକ ଭିକ୍ଷୁମାନେ ଜଣେ ବୟସ୍କ ଭିକ୍ଷୁ ବା 'ଥେର୍'ଙ୍କ ତତ୍ତ୍ୱାବଧାନରେ ଶିକ୍ଷାଲାଭ କରୁଥିଲେ । ଅଭିଜ୍ଞ ଭିକ୍ଷୁମାନଙ୍କ ପରିଚାଳନାରେ 'ବିହାର' ବା ବିରାଟ ସଭାଗୃହରେ ଧର୍ମ ଓ ଦର୍ଶନ ଚର୍ଚ୍ଚା ହେଉଥିଲା । ଆଶ୍ରମବାସୀଙ୍କ ସହିତ ବାହାରର ଅତିଥିମାନେ ମଧ୍ୟ ଏଥିରେ ଅଂଶ ଗ୍ରହଣ କରୁଥିଲେ ।

ଏହି ପାର୍ବତ୍ୟ ଅଞ୍ଚଳର ଆଶ୍ରମ ସହିତ ସମତଳ ଅଞ୍ଚଳର ଗ୍ରାମବାସୀମାନଙ୍କ ସଂପର୍କ ଖୁବ୍ ଭଲଥିଲା । ଧାର୍ମିକ ଗ୍ରାମବାସୀମାନେ ପୂଜାକରିବାକୁ ଅନେକ ସମୟରେ ମନ୍ଦିରକୁ ଯାଉଥିଲେ । ଉତ୍ସବ ଦିନମାନଙ୍କରେ ଲୋକମାନେ ଦଳବାନ୍ଧି ଲମ୍ବା ଧାଡ଼ି କରି ପାହାଡ଼ ଉପରକୁ ଚଢ଼ୁଥିଲେ ଏବଂ ବସତିରେ ଶ୍ରେଣୀ ଶ୍ରେଣୀ ଦୀପ ଧାଡ଼ି ଧାଡ଼ି ହୋଇ ଜଳୁଥିଲା ।

ଜୀମୂତ ଖୁବ୍ ଆନନ୍ଦରେ ଜୀବନ କଟାଉଥିଲା । ତାର ଦାଦା ଓ ଖୁଡ଼ୀ କଳହା ଲୋକ ହୋଇଥିବାରୁ ଗାଁଲୋକେ ତାଙ୍କୁ ଭଲପାଉନଥିଲେ । ତା' ଛଡ଼ା ଜୀମୂତ ସକାଳୁ ସଞ୍ଜଯାଏଁ ଛେଳିଗୋଠ ଧରି ପାହାଡ଼ ଉପରେ ରହୁଥିଲା । ତେଣୁ ପାହାଡ଼ ପର୍ବତ ହିଁ ତାର ଖେଳସାଥୀ ଥିଲେ ।

ଦିନେ ଜୀମୂତର ଦାଦା କୁଡ଼ିଆ ବାହାରେ କେତେକ ଗାଁଲୋକଙ୍କ ସହିତ ଗପୁଥିବା ବେଳେ ଜୀମୂତ ପଚାରିବସିଲା—"ଦାଦା, ସେଇ ପଥର ଗୁମ୍ଫାରେ ଗେରୁଆ ଲୁଗା ପିନ୍ଧି ଯେଉଁମାନେ ରହୁଛନ୍ତି ସେମାନେ କିଏ ?"

ସେ ବିରକ୍ତ ହୋଇ କହିଲେ, "ସେମାନେ ଭିକାରି । ଦିନସାରା କିଛି କାମ ନ କରି ଖାଲି ବୁଲି ବୁଲି ଭିକ ମାଗି ଚଳନ୍ତି ।"

ଏତିକିବେଳେ ଜଣେ ବୟୋଜ୍ୟେଷ୍ଠ ଗ୍ରାମବାସୀ ପ୍ରତିବାଦ କରି କହିଲେ, "ବୌଦ୍ଧ ଭିକ୍ଷୁମାନେ ଭିକାରି ନୁହଁନ୍ତି । ସେମାନେ ଗରିବ-ଜୀବନ ଯାପନ କରନ୍ତି ସତ; ମାତ୍ର ଭିକ ମାଗି ଖାଆନ୍ତି ନାହିଁ । ଅବଶ୍ୟ ଜଣେ ସନ୍ନ୍ୟାସୀ ଭିକ୍ଷାଥାଳି ଧରି ସବୁଦିନ ବୁଲିଆସନ୍ତି; କିନ୍ତୁ

ସେ କାହାକୁ କିଛି ମାଗନ୍ତି ନାହିଁ । ବରଂ ଧର୍ମପରାୟଣ ଲୋକେ ତାଙ୍କ ଭିକ୍ଷାଥଳୀରେ କିଛି ଖାଦ୍ୟ ଦେଇ ନିଜକୁ ଧନ୍ୟ ମନେକରନ୍ତି ।"

କାହ୍ନା କହିଲା, "ତାଙ୍କ ଭଣ୍ଡାରରେ ତ ତେଲ, ଶସ୍ୟ ଭର୍ତ୍ତିହୋଇ ରହିଛି !"

ଗ୍ରାମବାସୀ ଜଣକ ଉତ୍ତର ଦେଲା, "ରାଜା ଓ ଧନାଢ୍ୟ ଲୋକମାନେ ଏହି ଆଶ୍ରମ ପାଇଁ କେତୋଟି ଗାଁ ଦାନ କରିଯାଇଛନ୍ତି । ଏହି ଗାଁମାନଙ୍କରୁ କରସ୍ୱରୂପ ଯେଉଁ ଶସ୍ୟ ମିଳେ, ତାହା ଆଶ୍ରମକୁ ଯାଏ । ତା' ଛଡ଼ା ଲୋକଙ୍କ ଦାନରେ ଗୁମ୍ଫା ଚାରିପଟେ ସ୍ତମ୍ଭ, ତୋରଣ, ଝରଣା ଇତ୍ୟାଦି ତିଆରିହୋଇଛି ।"

ଆଉ ଜଣେ ଗ୍ରାମବାସୀ କହିଲା, "ବୌଦ୍ଧ ଭିକ୍ଷୁମାନେ ରୋଗୀମାନଙ୍କର ସେବା କରନ୍ତି ଏବଂ ଚେରମୂଳ ସଂଗ୍ରହକରି ଲୋକଙ୍କର ରୋଗ ଭଲକରନ୍ତି ।"



ଆଉ ଜଣେ କହିଲା, "ଆରେ ମୋ ଗାଈଟି ହଜିଯାଇଥିଲା । ଏହି ଭିକ୍ଷୁମାନେ ମୋତେ ଖୋଜିବାରେ ସାହାଯ୍ୟ କରିଥିଲେ ।"

"ଏଇ କେତେ ବର୍ଷ ତଳେ ଥରେ ଗାଁରେ ଆଦୌ ଫସଲ ହେଲାନାହିଁ । ଲୋକଙ୍କୁ ଖାଦ୍ୟ ଦେଇ ମୃତ୍ୟୁମୁଖରୁ ବଞ୍ଚାଇଥିଲେ ଏହି ଭିକ୍ଷୁମାନେ ।" ଆଉ ଜଣେ ଗ୍ରାମବାସୀ କହିଲା । କାହ୍ନୁ ଏଥର ବିଦ୍ରୂପ କରି କରି କହିଲା, "ଅନ୍ୟ ସମୟରେ ତାଙ୍କ କୋଠରି ଶସ୍ୟ କିଏ ଖାଏ ?"

"ଭିକ୍ଷୁ ଓ ତାଙ୍କର ଅତିଥିମାନେ ଖାଆନ୍ତି । ଯାତ୍ରୀ, ତୀର୍ଥଯାତ୍ରୀ, ଆଉ ପଢ଼ିବାକୁ ଆସୁଥିବା ଅନେକ ଛାତ୍ରଙ୍କ ଖାଇବାପାଇଁ ମଧ୍ୟ ଆଶ୍ରମରେ ବ୍ୟବସ୍ଥା କରାଯାଏ ।" ବୟୋଜ୍ୟେଷ୍ଠ ଗ୍ରାମବାସୀ ଜଣକ କହିଲେ । "ସନ୍ନ୍ୟାସୀମାନେ ସତ୍‌କାର୍ଯ୍ୟ କରୁଥିବାରୁ ଲୋକେ ତାଙ୍କୁ ଆଗ୍ରହରେ ବିଭିନ୍ନ ଜିନିଷ ଦିଅନ୍ତି । କିନ୍ତୁ ଦରକାରୀ ଜିନିଷ ଛଡ଼ା ଆଉ କିଛି ବ୍ୟବହାର କରନ୍ତି ନାହିଁ ଏହି ସନ୍ନ୍ୟାସୀମାନେ ।"

ଏଥର କାହ୍ନୁ କହିଲା, "ସେଇ ବିରାଟ ପଥର ଘର ଦେଖିଛ, ତା କାନ୍ଥରେ ଅଙ୍କା ହୋଇଥିବା ଲୋକମାନେ କେମିତି ଆଡ଼ମ୍ବରପୂର୍ଣ୍ଣ ପୋଷାକ ପିନ୍ଧିଛନ୍ତି !"

ଏହାର ଉତ୍ତରରେ ଜଣେ ପଥରକଟାଳି କହିଲା, "ବାସ୍ତବିକ ଚୈତ୍ୟ ଗୁମ୍ଫାଟି ଅତି ସୁନ୍ଦର । ତାର ସ୍ତୂପ ତଳେ ମହାନ୍ ବୁଦ୍ଧଙ୍କର କେଶ ଅଛି । ତେଣୁ ସୁନ୍ଦର ହେବା ତ ସ୍ୱାଭାବିକ । ଯେଉଁ ମଣିଷଙ୍କ ଚିତ୍ର କାନ୍ଥରେ ଦେଖାଯାଉଛି, ସେମାନେ ଦାତା ବା ସେମାନଙ୍କ ପିତାମାତା । ସନ୍ନ୍ୟାସୀମାନେ କିନ୍ତୁ ଅତି ସରଳ ମଣିଷ । ସେମାନେ ଗେରୁଆ ପିନ୍ଧନ୍ତି ଓ ମୁଣ୍ଡରେ ବାଳ ରଖନ୍ତିନାହିଁ । ସେମାନଙ୍କ ବାସସ୍ଥାନ ବି ବେଶ୍ ସାଦାସିଧା । ପାହାଡ଼ର ଗୋଟିଏ କଡ଼ରେ ଥିବା ଗୁମ୍ଫାମାନଙ୍କ ଭିତରେ ସେମାନେ ଶୁଅନ୍ତି । ଛୋଟ ଗୁମ୍ଫାମାନଙ୍କରେ ଜଣେ ଓ ବଡ଼ ଗୁମ୍ଫାମାନଙ୍କରେ ଗୁରୁ ଶିଷ୍ୟ ଦୁଇଜଣ ଶୁଅନ୍ତି । ତାଛଡ଼ା ଲମ୍ବା ଚଉଡ଼ା ଗୁମ୍ଫାମାନଙ୍କରେ ଯୁବକ ଭିକ୍ଷୁ ଓ ଅତିଥିମାନେ ଶୁଅନ୍ତି । ଗୋଟିଏ ଲମ୍ବାଳିଆ ପଥର ଖଣ୍ଡକୁ ଶେଯକରି ସେମାନେ ଶୁଅନ୍ତି ଓ ଆଉ ଖଣ୍ଡେ ପଥର ତକିଆର କାମ ଦିଏ ।

ଜୀମୂତ ଆଗ୍ରହରେ ସବୁ ଶୁଣୁଥିଲା । ହଠାତ୍ ତା ଖୁଡ଼ୀ ପାଟିକଲା, "ଅଳସୁଆ ଟୋକା ! ଦିନଯାକ ତ ଖେଳରେ ଗଲା, ଏବେ ପୁଣି ବଡ଼ମାନଙ୍କ କଥା ଶୁଣିବାକୁ ବସିଯାଇଛୁ ! ସକାଳେ ଗୋଠକୁ ଛେଳି ନେବାରେ ନିଶ୍ଚୟ ଡେରି କରିବୁ !" ଏକଥା ଶୁଣି ଜୀମୂତ ଉଠି ଗଲାବେଳେ ତା ଖୁଡ଼ୀଠୁଁ ଚାପୁଡ଼ା ଖାଇଲା ।



ଛେଳିଙ୍କୁ ପାହାଡ଼କୁ ଚରାଇ ନେବାରେ ହିଁ ଜୀମୂତର ଦିନ ପରେ ଦିନ କଟିବାକୁ ଲାଗିଲା । ଆଶ୍ରମ ବାଟେ ଗଲାବେଳେ ସନ୍ନ୍ୟାସୀମାନଙ୍କ ସହିତ କଥାବାର୍ତ୍ତା କରିବାକୁ ତାର ବହୁତ ଇଚ୍ଛାହୁଏ; କିନ୍ତୁ ସେ ସୁବିଧା ପାଏନି ।

ଥରେ ତା ଦାଦାର ଦେହ ଖରାପ ଥିବାରୁ ଜୀମୂତକୁ ସେବା କରିବାକୁ ପଡ଼ିଲା । ତେଣୁ ଛେଳିଗୋଠ ଧରି ବାହାରୁ ବାହାରୁ ଡେରି ହୋଇଗଲା । ସେ ଠିକ୍ ତାର କୁଡ଼ିଆ ବାହାରକୁ ବାହାରିଛି, ଦେଖିଲା ଜଣେ ଦୀର୍ଘକାୟ ଯୁବକ ଭିକ୍ଷୁ ଭିକ୍ଷାଥାଳି ଧରି ଚାଲିଛନ୍ତି । ସେ କାହାକୁ କିଛି ମାଗୁନାହାନ୍ତି । ଯିଏ କିଛି ତାଙ୍କ ଥାଳିରେ ଦେଉଛି, ତାକୁ ସେ ଧନ୍ୟବାଦ ଦେଉଛନ୍ତି ।

ଏହି ଭିକ୍ଷୁ ଜଣକ ହେଲେ ଆନନ୍ଦ । ଝିରଣ୍ଣୀ ବା ଆଧୁନିକ ନାସିକ୍‌ର ଆଶ୍ରମରୁ କାରଲିକୁ ନୂଆ ହୋଇ ଆସିଥିଲେ ତାଙ୍କର ଅଧ୍ୟୟନ ଶେଷ କରିବା ପାଇଁ ।

ଆନନ୍ଦ ଭିକ୍ଷାଥାଳୀ ବଢ଼ାଇ ନୀରବରେ ଚାଲିଥିଲେ ଏବଂ ଗ୍ରାମବାସୀମାନେ ନିଜ ଖାଦ୍ୟରୁ କିଛି ଅଂଶ ତାଙ୍କ ଥାଳିରେ ଦେଉଥିଲେ ।

ଗୃହିଣୀମାନେ ମୁଠେ ମୁଠେ ଚାଉଳ ଦେଉଥାନ୍ତି । କେହି କେହି ପତରେ ଗୁଡ଼ାଇ ଦକ୍ଷିଣା ଦେଉଥାନ୍ତି । ଜୀମୂତର ବି କିଛି ଦେବାକୁ ଇଚ୍ଛାହେଲା । ଦିନସାରାର ଖାଦ୍ୟ ପାଇଁ ତା ପାଖରେ ଯେଉଁ କଳା ବାଜରା ରୋଟିଟି ଥିଲା, ସେ ସେଥିରୁ ଅଧା ଦେଇଦେଲା । ଭିକ୍ଷୁ ସାମାନ୍ୟ ହସି ତାକୁ ଧନ୍ୟବାଦ ଦେଲେ ।

ଜୀମୂତ ଠିକ୍ କଲା ଯେ ପ୍ରତିଦିନ ତା ଖାଦ୍ୟରୁ କିଛି ଏହି ସନ୍ନ୍ୟାସୀମାନଙ୍କୁ ଦେବ । ସେ ଭିକ୍ଷୁ ଆନନ୍ଦଙ୍କୁ କହିଲା, "ସବୁଦିନେ କିଛି ଦେଇପାରିଲେ ମୁଁ ନିଜକୁ ଧନ୍ୟ ମନେକରିବି; କିନ୍ତୁ ଭୋରରୁ ତ ମୋତେ ଘର ଛାଡ଼ିବାକୁ ପଡୁଛି । ଯଦି କୌଣସି ବୃକ୍ଷ ପାଖରେ ଭିକ୍ଷାଥାଳୀଟିଏ ଥାଆନ୍ତା, ମୁଁ ଗଲାବେଳେ ବାଟରେ ଅଧାରୋଟି ଦେଇଯାଆନ୍ତା ।"

ସନ୍ନ୍ୟାସୀ ଆନନ୍ଦ ଛୁଆଟିର ଏତେ ଅଳ୍ପ ଖାଦ୍ୟରୁ ଭାଗ ନେବାକୁ ଚାହୁଁ ନ ଥିଲେ; କିନ୍ତୁ ଜୀମୂତକୁ ନିରାଶ କରିବାକୁ ବି ତାଙ୍କର ଇଚ୍ଛା ହେଉନାହିଁ । ତେଣୁ ସେ କହିଲେ, "ସନ୍ନ୍ୟାସୀ ମଧୁସୂଦନଙ୍କର ପରାମର୍ଶ ନେବା ।"

ପରାମର୍ଶ ମାଗିବାରୁ ବୃଦ୍ଧ ସନ୍ନ୍ୟାସୀ କହିଲେ, "ଛୁଆଟିର ଉଦାର ଗୁଣକୁ ନିରୁତ୍ସାହିତ କରିବା ଠିକ୍ ହେବନାହିଁ । ତେଣୁ କିଛି ଗୋଟେ ଉପାୟ ବାହାର କରିବାକୁ ପଡ଼ିବ ।"

କିଛି ଦିନ ପରେ ଜୀମୂତ ଦେଖିଲା, ବାଟରେ ଆନନ୍ଦ ଓ ମଧୁସୂଦନ ଠିଆହୋଇଛନ୍ତି । ତାକୁ ଦେଖି ମଧୁସୂଦନ କହିଲେ, "ଆମକୁ ସାହାଯ୍ୟ କରିବାପାଇଁ ତୁମର ଆଗ୍ରହ ଦେଖି ଆମେ ବହୁତ ଖୁସି । ଗୋଟିଏ ଭିକ୍ଷାଥାଳୀ ସାତଦିନରେ ଥରେ ଏଇ ସ୍ଥାନରେ ଥୁଆ ହେବ । ସାତଦିନରେ ଥରେ ଏଠିକି ବହୁତ ଅତିଥି ଆସନ୍ତି, ଆଉ ଆମର ବେଶି ଖାଦ୍ୟ ଦରକାରହୁଏ । ତୁମର ଖାଦ୍ୟ କିମିତି ଭାଗହେବ, ବତାଇଦିଏ । ତୁମ ରୋଟିକୁ ପ୍ରଥମେ ଦୁଇଭାଗ କରିଦେବ, ସେଥିରୁ ଗୋଟିଏ ଭାଗକୁ ପୁଣି ତିନି ଖଣ୍ଡ କରିଦେବ । ଏହି ତିନିଖଣ୍ଡରୁ ଖଣ୍ଡିଏ ଭିକ୍ଷାଥାଳୀରେ ଦେବ ।"





ଜୟନ୍ତ କହିଲା, "କିନ୍ତୁ ଏହି ସବୁ ତ ଅତି ଅଳ୍ପ ହେବ।"

"ଶ୍ରଦ୍ଧା ଓ ପ୍ରେମରେ ଯେଉଁ ଉପହାର ଦିଆଯାଏ, ତାକୁ ହିଁ ଭଗବାନ୍ ବୁଦ୍ଧ ଆନନ୍ଦରେ ଗ୍ରହଣ କରନ୍ତି। ପୁଣି ଛୋଟ ଛୋଟ ଉପହାର ମଧ୍ୟ ବଡ଼ ଜିନିଷରେ ପରିଣତ ହୁଏ। ଏଇ ବିରାଟ ପଥର ଘରକୁ ଦେଖ। ଧନୀ, ଗରିବ ଅନେକ ଦୟାଳୁ ଲୋକ ବର୍ଷ ବର୍ଷ ଧରି ଯେଉଁ ଉପହାର ସବୁ ଦେଇଛନ୍ତି, ସେଇଥିରେ ହିଁ ଭଗବାନ୍ ବୁଦ୍ଧଙ୍କ ପୂଜା କରିବା ପାଇଁ ଏଇ ସୁନ୍ଦର ଘରଟି ତିଆରି ହୋଇଛି।" ଏଇ କଥା କହିସାରି ବୃଦ୍ଧ ସନ୍ନ୍ୟାସୀ କହିଲେ, "ବର୍ତ୍ତମାନ ତୁମେ ଯାଇପାର। ଏବେ ଆନନ୍ଦ ତୁମକୁ ଭଗବାନ ବୁଦ୍ଧ ଓ ମଣିଷଙ୍କପାଇଁ ତାଙ୍କର ସନ୍ଦେଶ ସ୍ପଷ୍ଟରେ କହିବେ।"

ତା ପରେ କିଛି ଦିନ ପର୍ଯ୍ୟନ୍ତ ସନ୍ନ୍ୟାସୀମାନେ ଜୀମୂତକୁ ଆଉ ଦେଖିଲେ ନାହିଁ । ବୟୋଜ୍ୟେଷ୍ଠ ଶ୍ରମଣାଚାର୍ଯ୍ୟଙ୍କ ଶିଷ୍ୟ ଆନନ୍ଦଙ୍କୁ କହିଲେ ଯେ ଜୀମୂତକୁ ଖୁବ୍ ଜ୍ୱର । ଏ କଥା ଶୁଣି ଆନନ୍ଦ କିଛି ଚେର ମୂଳ ଇତ୍ୟାଦି ଧରି ଜୀମୂତ ପାଖକୁ ଗଲେ । ତାଙ୍କ ଔଷଧରେ ସାତଦିନ ଭିତରେ ଜୀମୂତର ଦେହ ଭଲହୋଇଗଲା ।

ଜୀମୂତର ଦେହ ଖରାପ ଥିବା ବେଳେ ଆନନ୍ଦଙ୍କ ସହିତ ସେ ଖୁବ୍ ଘନିଷ୍ଠ ସମ୍ପର୍କରେ ଆସିଲା । ଜୀମୂତ ତାଙ୍କୁ ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଚାଲିଲା ।

ଚୈତ୍ୟ ଗୁମ୍ଫାର ଦ୍ୱାରରେ ଥିବା ଗୋଟିଏ ଖୁବ୍ ଉଚ୍ଚ ସ୍ତମ୍ଭ ଉପରର ଶିରପଟେ ବଡ଼ ବଡ଼ ଜନ୍ତୁଙ୍କ ଚିତ୍ର ଦେଖାଇ ଜୀମୂତ ପଚାରିଲା, "ସେଠି ଜନ୍ତୁମାନଙ୍କର ଚିତ୍ର କାହିଁକି କରାଯାଇଛି ?"

ଆନନ୍ଦ କହିଲେ, "ସେଗୁଡ଼ିକ ହେଉଛନ୍ତି ସିଂହ । ସେମାନେ ଉତ୍ତର ଭାରତରେ ବେଶି ଦେଖାଯାନ୍ତି । ସ୍ତମ୍ଭ ଉପରେ ଲେଖାଯାଇଛି ଯେ ଏହି ବୃହତ୍ ସ୍ତମ୍ଭଟି ମହାରଥୀ ଗୋଟଙ୍କ ପୁତ୍ର ଅଗ୍ନିମିତ୍ରନକଙ୍କ ଦାନରେ ତିଆରି ।"

"ଅଗ୍ନିମିତ୍ରନକ କଣ ଏଇଠି ରହି ତିଆରି କରାଇଥିଲେ ?" ଜୀମୂତ ପଚାରିଲା ।

"ନା"—ଆନନ୍ଦ ସାମାନ୍ୟ ହସି ଉତ୍ତର ଦେଲେ, "ଗୁମ୍ଫାଗୁଡ଼ିକ ଲୋକମାନଙ୍କ ଦାନରେ ତିଆରି ହୋଇଛି । ରାଜା, ପାରିଷଦ, ବଣିକ, କାରିଗର, କୃଷି ସମସ୍ତେ ଏହାର ତିଆରିରେ ସାହାଯ୍ୟ କରିଛନ୍ତି । ଆଉ ଆମର ସୁଦକ୍ଷ ପଥରଶିଳ୍ପୀମାନେ ଏହି କାମଗୁଡ଼ିକ କରିଛନ୍ତି ।"

"ମୁଁ କ'ଣ ଏ କାମ କରିପାରିବି ?" ଜୀମୂତ ଟିକିଏ ଲଜେଇ ପଚାରିଲା । "ଏଭଳି କାମପାଇଁ କାରିଗର ସଙ୍ଘ ସବୁ ରହିଛି । ଏହି ସଙ୍ଘରେ ରହିବାକୁ ହେଲେ, ଖୁବ୍ ଦକ୍ଷ କାରିଗର ହେବାକୁ ପଡ଼ିବ ।" ଆନନ୍ଦ ତାକୁ ବୁଝାଇଦେଲେ ।

ସ୍ତମ୍ଭର ପଛପଟେ ଗୋଟିଏ ପୁରୁଷ ଓ ଗୋଟିଏ ସ୍ତ୍ରୀର ମୂର୍ତ୍ତିକୁ ଦେଖାଇ ଆନନ୍ଦ କହିଲେ, "ଏ ଦୁହେଁ ହେଉଛନ୍ତି ଦେବପାଳ ଓ ତାଙ୍କ ସ୍ତ୍ରୀ କ୍ଷମା । ସେମାନେ କର୍ଣ୍ଣକରେ

ରହନ୍ତି । ଏହି ଅଞ୍ଚଳକୁ ସେମାନେ ବହୁତ ଜମି ଦେଇଥିବାରୁ ତାଙ୍କର ସ୍ମୃତି ରକ୍ଷା ପାଇଁ ତାଙ୍କ ମୂର୍ତ୍ତି ଖୋଦନ କରାଯାଇଛି ।

ଆନନ୍ଦ କହୁଥିଲେ, "ଏହି ଜମିରୁ ଆଶ୍ରମବାସୀ ଓ ଅତିଥିମାନଙ୍କପାଇଁ ଖାଦ୍ୟଶସ୍ୟ ଆମଦାନି ହୁଏ । ସନ୍ନ୍ୟାସୀଙ୍କ ପାଇଁ ସରଳ ଖାଦ୍ୟ ଓ ଗେରୁଆ ପୋଷାକ ଯଥେଷ୍ଟ । ଦୟାଳୁ ଲୋକେ ଆମକୁ ଏଠାକୁ ଦାନ କରିଥାନ୍ତି । ତେଣୁ ଆମର ପୂରା ସମୟ ଧର୍ମଶିକ୍ଷା ଓ ଧର୍ମପ୍ରଚାରରେ ହିଁ କଟେ । ବେଳେ ବେଳେ ଶସ୍ୟ ବିକ୍ରି କରି ସେ ପଇସାରେ ଆଶ୍ରମର ଦୀପପାଇଁ ତେଲ କିଣାଯାଏ । ତୁମ ବାଁପାଖରୁ ପଞ୍ଚମ ସ୍ତମ୍ଭଟିକୁ ଦେଖ । ସେଥିରେ ଲେଖାଅଛି ଯେ ଏହି ସ୍ତମ୍ଭଟି ଧେନୁକକଟସ୍ଥ ଯବନର ଉପହାର । ତୃତୀୟ ଓ ଅନ୍ୟାନ୍ୟ କେତୋଟି ସ୍ତମ୍ଭ ମଧ୍ୟ ବହୁ ଦୂର ଅଞ୍ଚଳରୁ ଆସିଥିବା ଯବନମାନଙ୍କର ଉପହାର ।"

ବୃଦ୍ଧ ସନ୍ନ୍ୟାସୀ ମଧୁସୂଦନ କହିଲେ, "ସୁନ୍ଦର ଅଶ୍ୱତ୍ଥ ତୋରଣଟି ସେହି ଅଶ୍ୱତ୍ଥ ଗଛର ପ୍ରତୀକ, ଯାହା ତଳେ ଧ୍ୟାନକରି ବୁଦ୍ଧ ପରମଜ୍ଞାନ ଲାଭକରିଥିଲେ । ଏହି ବାଟେ ଯେଉଁମାନେ ଗୁମ୍ଫାକୁ ପ୍ରବେଶ କରନ୍ତି ସେମାନେ କେବଳ ସତ୍ୟ ଓ ପରମଜ୍ଞାନ ଲାଭପାଇଁ ଆସିବା ଉଚିତ । ତୁମର ଯଦି ଭିତରକୁ ଯିବାକୁ ବେଳ ନାହିଁ, ତାହାହେଲେ ଏହି ତୋରଣ ତଳେ ଠିଆହୋଇ ଏହି ମନ୍ତ୍ର ଉଚ୍ଚାରଣ କର—'ଓଁ ମଣି, ପଦ୍ମେ ଓଁ—ପଦ୍ମ ସିଂହାସନେ ଆସୀନ ବୁଦ୍ଧ ।' ତାହାହେଲେ ତୁମେ ଶାନ୍ତି ପାଇପାରିବ ଓ ତୁମ ଦୁଃଖ କମିଯିବ ।"

ସମ୍ରାଟ୍ ଅଶୋକ ଯୁଦ୍ଧରେ ଜିତିବା ପରେ ଲୋକଙ୍କ ଦୁଃଖରେ ଅଭିଭୂତ ହୋଇ କିପରି ଯୁଦ୍ଧ ତ୍ୟାଗ କରିଥିଲେ, ସେ କଥା ମଧ୍ୟ ଜୀମୂତ ନିକଟରେ ସନ୍ନ୍ୟାସୀ ଆନନ୍ଦ ବର୍ଣ୍ଣନା କଲେ । ଭଗବାନ ବୁଦ୍ଧଙ୍କ ବାର୍ତ୍ତା ସମ୍ରାଟ୍ ଅଶୋକ ଚାରିଆଡ଼େ ପଠାଇଥିଲେ ଏବଂ ମଧ୍ୟଭାରତରେ ମଧ୍ୟ ଏହି ବାର୍ତ୍ତା ପହଞ୍ଚିଥିଲା ।

ପଶ୍ଚିମ ଭାରତରେ କାର୍ଲାଠାରୁ ଅନତି ଦୂରରେ ଥିବା ଭଜ ଆଶ୍ରମ ଏବଂ ନାସିକ୍ଠାରେ ଥିବା ବୌଦ୍ଧ ସନ୍ନ୍ୟାସୀଙ୍କ ବସତି ଇତ୍ୟାଦି ଅନେକ ଆଶ୍ରମ ବିଷୟରେ ଆନନ୍ଦ ଜୀମୂତକୁ କହିଲେ ।

ବିଭିନ୍ନ ଧର୍ମରେ ବିଶ୍ୱାସ କରୁଥିବା ଦେଶର ବିଭିନ୍ନ ଅଞ୍ଚଳର ଶାସକମାନେ କିପରି ପରମଜ୍ଞାନୀ ବୁଦ୍ଧଙ୍କଦ୍ୱାରା ପ୍ରଭାବିତ ହୋଇ ଗେରୁଆପିନ୍ଧା ସନ୍ନ୍ୟାସୀଙ୍କୁ ସମ୍ମାନ ଓ ସାହାଯ୍ୟ କରୁଥିଲେ, ସେ କଥା ମଧ୍ୟ ଜୀମୂତ ଆନନ୍ଦଙ୍କଠାରୁ ଶୁଣିଲା ।



ନାସିକ୍ ଓ କାର୍ଲାର ପଥରରେ ଲେଖାଥିବା ବିବରଣୀରୁ ଶକ କ୍ଷତ୍ରପ ନାହାପାନଙ୍କ ଜୋଇଁ ଉଷଭଦତ୍ତଙ୍କ ଦାନ ଧର୍ମ ବିଷୟରେ ଧାରଣା ମିଳେ । ସେ ଉଭୟ ବ୍ରାହ୍ମଣ ଓ ବୌଦ୍ଧ-ମାନଙ୍କୁ ଉପହାର ଦେଉଥିଲେ । ଉଷଭଦତ୍ତ ବ୍ରାହ୍ମଣମାନଙ୍କୁ ଗୋରୁ ଗାଈ ଓ ନାସିକ୍‌ର ବୌଦ୍ଧ

ଆଶ୍ରମର ବ୍ୟବହାର ପାଇଁ ଆଠଶହ କହାପଣରେ ଏକ ବଗିଚା ଦାନକରିଥିଲେ । ଏହି ଲେଖାମାନଙ୍କରୁ ଜଣାଯାଏ ଯେ ଶକ କ୍ଷତ୍ରପଙ୍କ ଉତ୍ତରାଧିକାରୀ ସାତକର୍ଣ୍ଣି ଶାସକମାନେ ତାଙ୍କ ପୂର୍ବବର୍ତ୍ତୀ ରାଜାମାନଙ୍କ ଉପହାର ସ୍ୱୀକାରକରି ଆହୁରି ଅନ୍ୟାନ୍ୟ ଉପହାର ମଧ୍ୟ ଦେଇଥିଲେ । ଠିକ୍ ଦୁଆର ବନ୍ଧ ଉପରେ ଥିବା ଲେଖାରୁ ଜଣାପଡ଼େ ଯେ ରାଜା ଗୌତମୀପୁତ୍ର ତାଙ୍କର ପୂର୍ବବର୍ତ୍ତୀ ଶାସକଙ୍କଦ୍ୱାରା ବୌଦ୍ଧ ସନ୍ନ୍ୟାସୀଙ୍କୁ ଦିଆଯାଇଥିବା କରଜକ ଗ୍ରାମର ଉପହାରକୁ ସ୍ୱୀକୃତ ଦେଇଥିବେ ।

ଗରିବ ଲୋକମାନେ ମଧ୍ୟ ସନ୍ନ୍ୟାସୀମାନଙ୍କୁ ଦାନ ଦେବାପାଇଁ ଇଚ୍ଛା କରୁଥିଲେ । ତୋରଣ ତଳେ ଥିବା ଗୋଟିଏ ପଥର ମେଖଳା ଦେଖାଇ ଆନନ୍ଦ କହିଲେ ଯେ ତାହା ଅଶୋକମିତ୍ରା ନାମକ ଜଣେ ସନ୍ନ୍ୟାସୀଙ୍କ ଉପହାର, ଯିଏ ଅନେକ ଗରିବଙ୍କ ଦାନରୁ ଏକାଠି-କରି ଏହାକୁ ଗଢ଼ିଥିଲେ ।

ଏହି ପ୍ରସ୍ତରଲେଖା ଭିତରେ ଭୂତପାଳ ନାମକ ଜଣେ ଧନୀ ବଣିକଙ୍କ ନାଁ ଥିଲା । ଦୁଇଟି ପଥର ପାଦ-ମଣ୍ଡଳ ବିଶିଷ୍ଟ ଅର୍ଦ୍ଧଗୋଲାକୃତ ତୋରଣ ସେ ପ୍ରବେଶ ଦ୍ୱାରର ଉଭୟ ପଟେ ତିଆରିକରାଇଥିଲେ ।

ସୁଦୂର ପଶ୍ଚିମ ଅଞ୍ଚଳରୁ ସମୁଦ୍ରବାଟେ ଆସୁଥିବା ଯବନ ବଣିକମାନଙ୍କ ବିଷୟରେ ଜାଣିବାକୁ ଜୀମୁତ ପୃଚ୍ଛିବାରୁ ଆନନ୍ଦ କହିଲେ ଯେ ସେମାନେ ସ୍ଥଳପଥରେ ତରୁଣ ଦିଗ୍‌ବିଜୟୀ ସିକନ୍ଦରଙ୍କ ସହିତ ପ୍ରଥମେ ଆସିଥିଲେ, କିନ୍ତୁ ପରେ ଚାଲିଯାଇଥିଲେ । ଏବେ ସେମାନେ ଶାନ୍ତିପ୍ରିୟ ବଣିକ ଭାବରେ ଆସନ୍ତି ଓ ବୁଦ୍ଧଙ୍କ ବାଣୀରେ ଆଗ୍ରହ ଦେଖାନ୍ତି ।

ଜୀମୁତ ଲକ୍ଷ୍ୟକଲା ଯେ ଯବନ, ଅତର ବ୍ୟବସାୟୀ ସିଂହଦତ୍ତ, ବଢ଼େଇ ସମୀକ ଇତ୍ୟାଦି ଅଧିକାଂଶ ଦାତା ଧେନୁକକଟର ଲୋକ । ଜୀମୁତ ମୋଟ ଚଉଦଜଣ ଦାତାଙ୍କ ନାଁ ସଂଗ୍ରହ କଲା । ବୁଦ୍ଧ ଓ ବୌଦ୍ଧ ସନ୍ନ୍ୟାସୀଙ୍କୁ ଯେ ଏତେ ଲୋକ ଭକ୍ତି ଓ ଶ୍ରଦ୍ଧା କରନ୍ତି—ଏ କଥା ଜାଣି ଜୀମୁତ ଖୁବ୍ ଆଶ୍ଚର୍ଯ୍ୟ ହେଲା ।

## ଛେଳି ଓ ଚିତାବାଘ

ଘରେ ପହଞ୍ଚିଲେ ଜୀମୂତ ତାର ସବୁ ଛେଳି ଏକାଠି କଲାପରେ ଦେଖିଲା ଯେ ଗୋଟିଏ କଳା ଅଣ୍ଡିରା ଛେଳିର ପତ୍ତା ମିଳୁନାହିଁ । ଏ ଛେଳିଟି ନ ମିଳିଲେ ତା ଦାଦା ଯେ ତା ଉପରେ ଭୀଷଣ ରାଗିବ, ଏ କଥା ଭାବି ସେ ବହୁତ ବ୍ୟସ୍ତହେଲା ।

ଆସ୍ତେ ଆସ୍ତେ ଅନ୍ଧାର ବଢ଼ୁଥିଲା । ଜୀମୂତ ଠିକ୍ କଲା ଯେ—ଆଗ ଅନ୍ୟ ଛେଳିଙ୍କୁ ନେଇ ରଖିଦେବ ଓ ତା ପରେ ଘରୁ ଖସିଆସି ହଜିଥିବା ଛେଳିଟିକୁ ଖୋଜିବ ।

ବାଟରେ ଜଣେ ବୃଦ୍ଧ ସନ୍ନ୍ୟାସୀ ତାକୁ କହିଲେ, "ଜଙ୍ଗଲ ପଟକୁ ଯାନା । ଗାଁ ପାଖରେ ଚିତାବାଘଟିଏ ବୁଲୁଛି ବୋଲି ଗାଁଲୋକେ କୁହାକୁହି ହେଉଛନ୍ତି ।"

ଜୀମୂତ ଦୁଃଖରେ ଭାବିଲା, "ଚିତାବାଘ ଆଉ ପଛେ, ମୋତେ ପୁଣି ଫେରିବାକୁ ପଡ଼ିବ ।" ସମସ୍ତେ ଶୋଇଯିବା ପରେ ସେ ପାହାଡ଼ ଆଡ଼କୁ ଚାଲିବା ଆରମ୍ଭକଲା ।



ପାହାଡ଼ ଚଢ଼ିଲାବେଳେ ଜମୁନ ଚୁପ ଗଳାରେ କାନ୍ଦୁଥିଲା । ଦିନଯାକ କାମ କରି ସେ ଥକିଯାଇଥିଲା, ତା ଛଡ଼ା ରାତିରେ ତାକୁ ଖୁବ୍ ଡର ବି ଲାଗୁଥିଲା । ହଠାତ୍ ତାର ମନେ ପଡ଼ିଗଲା ସନ୍ନ୍ୟାସୀ ମଧୁସୂଦନଙ୍କ କଥା । "ପଦ୍ମସିଂହାସନେ ଅସୀନ ବୃଦ୍ଧ" ଉଚ୍ଚାରଣ କରିବା ମାତ୍ରେ ତା ମନରୁ ସମସ୍ତ ଭୟ ଦୂରେଇଗଲା ।

କ୍ଳାନ୍ତ ପାଦରେ ସେ ପାହାଡ଼ ଚଢ଼ିବାକୁ ଲାଗିଲା । ହଠାତ୍ ସେ ଗୋଟେ ଅସ୍ପଷ୍ଟ ଶବ୍ଦ ଶୁଣିପାରିଲା । ଦେଖିଲାବେଳକୁ ତାର ସେଇ କଳା ଅଣ୍ଡିରା ଛେଳଟି ପାହାଡ଼ର ଶୀର୍ଷରେ ଠିଆ ହୋଇଛି ।

ଜମୁନକୁ ଦେଖି ଛେଳଟା ପ୍ରଥମେ ଆନନ୍ଦରେ ବୋବାଇଲା । ତା ପରେ ହଠାତ୍ ତା ସ୍ୱରରେ ଭୟର ସୂଚନା ଦେଖି ଜମୁନ ଚାରିଆଡ଼କୁ ଚାହିଁଲା । ଦୁଇଟି ନୀଳ ଆଖି ଅନ୍ଧାରରେ



ମେଁ ମେଁ କରୁଥିଲା ଓ ଅଳ୍ପେ ଅଳ୍ପେ ଗୋଟିଏ କଳା ମୂର୍ତ୍ତି ଘୋଷାରି ହୋଇ ଆଗଉଥିଲା । ଜୀମୂତ ଜାଣିପାରିଲା ଯେ ସେଇଟା ଗୋଟାଏ ଚିତାବାଘ ।

ଜୀମୂତ ତାର ଲମ୍ବା ପାଞ୍ଚଣକୁ ବୁଲେଇ ଚିତ୍କାର କଲା । ଭାବିଲା, ତା ପାଟି ଶୁଣି ବାଘଟା ପଳାଇଯାଇପାରେ ।

ତା' ପରେ କ'ଣ ହେଲା, ଜୀମୂତର ଠିକ୍ ମନେନାହିଁ । ବୋଧହୁଏ ଚିତାବାଘଟି ଛେଳି ଉପରକୁ ଡେଇଁବାକୁ ଚେଷ୍ଟା କରୁ କରୁ ଦୂରତା ଜାଣି ନପାରି ତଳେ ଥିବା ପାହାଡ଼ଖାଇଁରେ ପଡ଼ିଗଲା । ତା ପଛେ ପଛେ ଛେଳିଟି ବି ମୁଣ୍ଡିଆ ଉପରୁ ତଳେ ପଡ଼ିଲା । ଜୀମୂତ ସମ୍ଭବତଃ ଚିତାବାଘ ଧକ୍କାରେ ଯାଇଁ ପାହାଡ଼ ତଳେ ।



ଜୀମୂତର ମନେହେଲା, ତା ମୁହଁକୁ ଲାଗି ଚିତାବାଘ ପାଟି ଆଁ କରି ବସିଛି । ବାଘର ଉଷ୍ଣ ନିଃଶ୍ୱାସ ଜୀମୂତ ତା ମୁହଁରେ ଅନୁଭବ କଲା ।

ଧୀର ସ୍ୱରରେ ସେ କହିବା ଆରମ୍ଭ କଲା, "ଓଁ ମଣି ପଦ୍ମେ ଓ ! ଧର୍ମସିଂହାସନେ ଆସୀନ ବୁଦ୍ଧ ।" ତା'ପରେ ଦେଖିଲା, ହଠାତ୍ ଚିତାବାଘର ଦେହଟି ଛଟପଟ ହୋଇ ସ୍ଥିର ହୋଇଯାଇଛି । ତାର ପଛପଟ ହାଡ଼ ଭାଙ୍ଗି ଯାଇଛି ଏବଂ ସେ ମରି ପଡ଼ିଛି । ଜୀମୂତ ଏତେ ଥକି ଯାଇଥିଲା ଯେ ଛେଳିକୁ ପାଖରେ ଶୁଆଇ ନିଜେ ମଲା ବାଘର କଡ଼ରେ ଗଭୀର ନିଦରେ ଶୋଇପଡ଼ିଲା ।

ଆକାଶ ଆସ୍ତେ ଆସ୍ତେ ଧୂସର ହେଲା । ପକ୍ଷୀଙ୍କର ଚେଁ ଚିଁ ଶବ୍ଦ ଆରମ୍ଭ ହେବା ବେଳକୁ ଜୀମୂତର ନିଦ ଭାଙ୍ଗିଲା ।

ଛେଳିଟାର ଗୋଡ଼ ଭାଙ୍ଗି ଯାଇଥିଲା । ତାକୁ କାନ୍ଧରେ ପକାଇ ଜୀମୂତ ଘର ଆଡ଼େ ଫେରିଲା । ତା ଦାଦା କାହ୍ନୁ ଓ ଆଉ କେତେଜଣ ଗାଁଲୋକ ତାକୁ ଖୋଜୁ ଖୋଜୁ ଯାଇ ଗାଁ ମୁଣ୍ଡରେ ପହଞ୍ଚିଥିଲେ । ଜୀମୂତକୁ ଦେଖି ଛେଳିଟିକୁ ତା କାନ୍ଧରୁ ଓହ୍ଲାଇଦେଲେ । କାହ୍ନୁ ଚିତ୍କାର କଲା, "ମୋର ସବୁଠାରୁ ସୁନ୍ଦର ଛେଳିଟିର ଗୋଡ଼ ଭାଙ୍ଗି ଦେଇଛୁ !" ଏହା କହି ଜୀମୂତକୁ ବାଡ଼ି ଉଞ୍ଚାଇଲା ।

ଜଣେ ବୟସ୍କ ଗ୍ରାମବାସୀ ତାକୁ ଅଟକାଇ କହିଲା, "ତମେ ଏହି ପୁଅ ପ୍ରତି ଯଥେଷ୍ଟ ଦୁର୍ବ୍ୟବହାର କରିଛ । ଏଣିକି ଜୀମୂତକୁ ସନ୍ନ୍ୟାସୀମାନଙ୍କ ମାରଫତ୍‌ରେ ଦେଇଦେବୁ ।"

ତା ପରେ ଜୀମୂତକୁ ସେମାନେ ସନ୍ନ୍ୟାସୀ ମଧୁସୂଦନଙ୍କ ପାଖକୁ ନେଇଗଲେ । ଜୀମୂତ ଧୀର ସ୍ୱରରେ କହିଲା, "ବୁଦ୍ଧଙ୍କ ନାମ ଉଚ୍ଚାରଣ ମୋତେ ବହୁତ ଧୈର୍ଯ୍ୟ ଆଉ ଶକ୍ତି ଦେଲା । ବାଘଟି ଆଁ କରି ମୋତେ ଖାଇବା ବେଳକୁ ମରିଗଲା । ପ୍ରକୃତରେ ବୁଦ୍ଧ ମୋତେ ଆଶୀର୍ବାଦ କରିଥିଲେ ।"

ବୃଦ୍ଧ ସନ୍ନ୍ୟାସୀ ହସି ହସି କହିଲେ, "ବୁଦ୍ଧଙ୍କ ବିଷୟରେ ତୁମର ଆହୁରି ଅନେକ କଥା ଜାଣିବାର ଅଛି । ଆଉ ସେ ସବୁ ଶିଖିବାପାଇଁ ତୁମେ ବେଶ୍ ଉପଯୁକ୍ତ ।"

ସେ ଦିନଠାରୁ ଜୀମୂତ ଜୀବନର ଗତି ବଦଳିଗଲା । ସେ ସନ୍ନ୍ୟାସୀଙ୍କ ସେବାରେ ଲାଗିଲା ଏବଂ ବୁଦ୍ଧଙ୍କ ତତ୍ତ୍ୱ ଶିକ୍ଷାକଲା ।

# ମଥୁରାର କାରଖାନାରେ

## ପର୍ଯ୍ୟଟକର ପ୍ରତ୍ୟାବର୍ତ୍ତନ

ଦ୍ୱିତୀୟ ଖ୍ରୀଷ୍ଟାବ୍ଦର ମଧ୍ୟଭାଗ । କୁଶାଣ ସାମ୍ରାଜ୍ୟରେ ଥିବା ମଥୁରା ନଗରରେ ଗୋଟିଏ ଦିନର କଥା । ଶିଳ୍ପି-ବସ୍ତିର ଅଣଓସାରିଆ ରାସ୍ତା ଓ ଛୋଟ ଛୋଟ ଲୋକ ଗହଳ ଘରଗୁଡ଼ିକରେ ସମସ୍ତେ କାର୍ଯ୍ୟବ୍ୟସ୍ତ । ଶହ ଶହ ବର୍ଷର ପୁରାତନ ମଥୁରା ନଗର କୁଶାଣ ଶାସନରେ ବେଶ୍ ସମୃଦ୍ଧ ।

ଗୋଟିଏ ଛୋଟ କାରଖାନାର ଦୁଆରରେ ଠିଆହୋଇ କେତକୀ ସୂର୍ଯ୍ୟଙ୍କର ଶେଷ ରଶ୍ମି ଲକ୍ଷ୍ୟକରୁଥିଲା । ସେ କାରଖାନା କୋଠରିଟି ଏକାଧାରରେ ଥିଲା ବସିବା ଘର, ଶୋଇବା ଘର ଆଉ କାରଖାନା । ସେଇ କୋଠରିରେ କେତକୀର ଶ୍ୱଶୁର ମଥୁରାର ପ୍ରସିଦ୍ଧ ଲାଲ ପଥରରେ ଆଙ୍ଗୁଠି ଚଳାଉଥିଲେ । ତାର ସ୍ୱାମୀ ଅଗଣାରେ ଅନ୍ୟାନ୍ୟ କାରିଗରଙ୍କ ସହିତ ନାଲି, ଗୋଲାପୀ ଚକଚକ ମୂର୍ତ୍ତି, ଫଳକ ଓ ସୂର୍ଯ୍ୟ-ସ୍ତୂପ ଖୋଳିବାରେ ବ୍ୟସ୍ତ । କାମ ବନ୍ଦ କରିବାର ସମୟ ହୋଇଗଲାଣି ।

କେତକୀକୁ ଦୁଆର ପାଖରେ ଦେଖି ତା ସ୍ୱାମୀ ରାଗିଗଲେ । ପାଟିକରି ପଚାରିଲେ, "ପୁଣି ସେଇ କୁଳାଙ୍ଗାରକୁ ଅପେକ୍ଷା କରିଛ ? କାଲି ବୋଧହୁଏ ସକାଳୁ ପୁଣି ତାପାଇଁ ପ୍ରାର୍ଥନା କରିବ ?"

କେତକୀ ଉତ୍ତର ଦେଲା, "ତାର ମଙ୍ଗଳ ଓ ଫେରିବା ପାଇଁ ମୁଁ ନିଶ୍ଚୟ ପ୍ରାର୍ଥନା କରିବ, ଯିମିତି ତୁମପାଇଁ, ତୁମ ବାପାଙ୍କ ପାଇଁ ଏବଂ ତୁମର ଅନ୍ୟାନ୍ୟ ପୁଅଙ୍କ ପାଇଁ ସବୁବେଳେ ପ୍ରାର୍ଥନା କରୁଛି ।"

"ସେମାନେ ସମସ୍ତେ ଭଲପିଲା । ପଥର ଖଣିରେ ଆଉ ପଥର ମିସ୍ତ୍ରୀଙ୍କ ପାଖରେ ସେମାନେ କାମ କରୁଛନ୍ତି ।"

ଦହି, ତରକାରି ଓ ଭାତ ଆଣି କେତକୀ ତା ସ୍ୱାମୀ ପାଖରେ ଥୋଇବା ବେଳକୁ ତା ଶ୍ୱଶୁରବୁଢ଼ା ମୁଣ୍ଡ ହଲାଇ ଆରମ୍ଭକଲା, "ଅବଶ୍ୟ ଅନ୍ୟମାନେ ଭଲ ପିଲା; କିନ୍ତୁ ମାର୍ଚର କିଛି ଗୋଟାଏ ବିଶେଷତ୍ୱ ଅଛି । ମୋର ମନେଅଛି, ସେ ନଅବର୍ଷର ପିଲା ଥିଲାବେଳେ ପଥରରେ ଗୋଟିଏ ସୁନ୍ଦର ମାଙ୍କଡ଼ ମୂର୍ତ୍ତି କରିଥିଲା । ଆଉ ଯେତେବେଳେ ସେ ପ୍ରଶ୍ନ ପଚାରେ, ତା ଆଖି କିମିତି ଉଜ୍ଜ୍ୱଳ ଦିଶେ !"

ତାର ଉଜ୍ଜ୍ୱଳ ଆଖି ତାକୁ କେଉଁଠି ପହଞ୍ଚାଇଲା, ଦେଖ ! ମାଳୀର ଝିଅ ସହିତ ସେ ବେଶି ଗପସପ କରିବାରୁ ମୁଁ ତାକୁ ମାରିଲି । ତା'ପରେ ଗୋଟିଏ ଶକ ଘୋଡ଼ା ବ୍ୟବସାୟୀ ସହିତ ସେ ଚାଲିଗଲା । ବାରବର୍ଷ ବିତିଗଲାଣି । କିଏ ଜାଣେ, ସେ ଏବେ କେଉଁଠି ଅଛି !" କେତକୀର ସ୍ୱାମୀ କହିଲେ ।

ରାତି ଆସ୍ତେ ଆସ୍ତେ ବଢ଼ିଲା ଓ ଚାରିଆଡ଼େ ଅନ୍ଧାର ଓ ନୀରବତା ଖେଳିଗଲା । ଆଲୁଅ ପାଇଁ ତେଲ କିଣିବାକୁ ଲୋକଙ୍କର ଶକ୍ତି ନ ଥିଲା ।

ପରଦିନ ସକାଳେ ଗୋଟିଏ ପତଳୀ ଝିଅକୁ ସାଙ୍ଗରେ ନେଇ କେତକୀ ରାସ୍ତା-କଡ଼ରେ ଥିବା ମନ୍ଦିରକୁ ଗଲା । ଏହି ଝିଅଟି ତାଙ୍କ ପଡ଼ିଶାଘରର ଝିଅ । ପୁଅ ଫେରିଲେ ଏହି ଝିଅକୁ ତା ସହିତ ବାହାକରିବ ବୋଲି କେତକୀ ମନେ ମନେ ଠିକ୍ କରିଥିଲା ।

ସେତିକିବେଳେ ଗୋଟିଏ ବଣିକଦଳ ମଥୁରାଆଡ଼କୁ ଆସୁଥିଲେ । ମଥୁରାର ସବୁଜ ଶୁଆ ଆଉ ବରଟ ନିମ ଓ କଦମ୍ବ ଗଛ ଦେଖି ଜଣେ ଯାତ୍ରୀ ଅଧୈର୍ଯ୍ୟ ହୋଇ ଖୁବ୍ ଜୋର୍‌ରେ ମାଡ଼ିଆସିବାର ଦେଖାଗଲା ।

ହଠାତ୍ ଏହି ଯାତ୍ରୀଟି ସାମ୍ନାରେ ତା ମା'କୁ ଦେଖିଲା—ଡେଙ୍ଗା ଏବଂ ସାଦାସିଧା ସ୍ତ୍ରୀଲୋକଟିଏ । କେତକୀ ଠିକ୍ ସେତିକିବେଳେ ବୁଲିପଡ଼ି ଚାହିଁଲା ।

"ତମେ ମୋତେ ଚିହ୍ନିଗଲ ନିଶ୍ଚୟ ।" ଯାତ୍ରୀଟି କହିଲା ।

"ତୋତେ ପୁଣି ଚିହ୍ନିବିନି ? ଶୁଣ୍, ଜଲ୍‌ଦି ଘରକୁ ଚାଲ", କେତକୀ କହିଲା ।

ମାର୍‌ଟ ପଚାରିଲା, "ଯଦି ବାପା ତଡ଼ିଦିଅନ୍ତି ?" କେତକୀ ଉତ୍ତର ଦେଲା, "ହୁଏତ ବାପା ହଠାତ୍ କିଛି କହିଦେଇପାରନ୍ତି; କିନ୍ତୁ ମୁଁ ଜାଣେ, ତୋର ଫେରିବା ବାଟକୁ ସେ କେତେ ବ୍ୟାକୁଳରେ ଅନେଇଛନ୍ତି ।" ତାପରେ ଝିଅଟିକୁ ଚାହିଁ କହିଲା, "ଝିଅ, ତୁ ଘରକୁ ଯା । ମୁ ଖବରଦେଲେ ଆସିବୁ ।"

ଗାଁ ଦାଣ୍ଡର କୂଅମୂଳେ ଧୁଆଧୋଇ ହେଉ ହେଉ ମା' ପୁଅ ଗପିବା ଆରମ୍ଭ କରିଦେଲେ ।

ପୁଅକୁ ସାଙ୍ଗରେ ଧରି କେତକୀ ଘରେ ପଶିଲାବେଳକୁ ବାପାର ମୁହଁ କିଛି ସମୟ ପାଇଁ ହଠାତ୍ ଆନନ୍ଦରେ ଉଜ୍ଜ୍ୱଳ ହୋଇଗଲା; କିନ୍ତୁ ନିଜକୁ ସଂଯତକରି କର୍କଶ କଣ୍ଠରେ ପଚାରିଲେ, "ତାହାହେଲେ ଶେଷରେ ତୁ ଫେରିଆସିଲୁ !"

ମଣ୍ଡବେଳେ କେତକୀ ସମସ୍ତଙ୍କୁ ଖାଇବାକୁ ବାଢ଼ି ଦେଲା । ବାପା, ପୁଅ ଦୁହେଁ ଚୁପ୍‌ଚାପ୍ ଖାଇବାକୁ ଲାଗିଲେ । ଖିଆ ସରିଲାବେଳକୁ ବାପା ରୁକ୍ଷ-କଣ୍ଠରେ ପଚାରିଲେ, "ବର୍ତ୍ତମାନ କଣ କରିବୁ ବୋଲି ଠିକ୍ କରିଛୁ ?" ମାର୍ତ ଶାନ୍ତ ସ୍ୱରରେ ଉତ୍ତର ଦେଲା, "ଜଣେ ସୁଦକ୍ଷ କାରିଗରକୁ ମଥୁରା ହେଉ ବା ଅନ୍ୟ ଯେଉଁଠି ହେଉ କାମ ମିଳିବାରେ କିଛି ଅସୁବିଧା ହେବନି ।"

"ତୋର ଶକ ବେପାରୀମାନଙ୍କଠୁ କାରବାର ଶିଖିବୁ ? ସେମାନେ ତ ଘୋଡ଼ା ବେପାରୀ, ଘୋଡ଼ା ବେପାରୀମାନେ ମିଛୁଆ ଆଉ ଠକ ।"

ମାର୍ତ କହିଲା, "ରାଜାରାଜୁଡ଼ାମାନେ ତ ଶକମାନଙ୍କୁ ଅଶ୍ୱପାଳକ ଓ ସଇସ ଭାବରେ ନିଯୁକ୍ତ କରୁଥିଲେ । ପୁଣି ମଥୁରାର କାରିଗରମାନେ ଶକ ସୈନିକଙ୍କର ଓସାରିଆ ମୁହଁ, ଲମ୍ବା ଝୁଲନ୍ତା ଦାଢ଼ି, ମୋଟା ଉତ୍ତରାଞ୍ଚଳ ପୋଷାକ ଏବଂ ନରମ ପାଦ ପରିଚ୍ଛଦକୁ ଅତି ଦକ୍ଷ ଭାବରେ ପଥରରେ ଖୋଳିଛନ୍ତି । ଆମର କୁଶାଣ ଶାସକମାନେ



ଶକକ୍ଷତ୍ରପର ଦଖଲ୍, ଆଉ ଶକମାନେ ତ ଆମର ବନେ ଶାସକ ଥିଲେ !"

ଏହାର ଉତ୍ତରରେ ମାର୍ତ୍ତର ବାପା କହିଲେ, "ଯେତେଦିନ ଯାଏଁ ଶାସକମାନେ ଆମ ଉପରେ ଅତି ବେଶି ଟିକସ ବସାଇ ନାହାନ୍ତି, ଆଉ ତାଙ୍କ ସୈନ୍ୟମାନେ ଆମ ଉପରେ ଅତ୍ୟାଚାର କରିନାହାନ୍ତି, ସେତେ ଦିନ ଯାଏଁ କିଏ ଶାସନ କଲେ ବା ଆମର କଣ ଯାଏ ଆସେ ? କିନ୍ତୁ ମଥୁରାର ଖୋଦନଶିଳ୍ପୀ ଘୋଡ଼ା ବେପାରୀଙ୍କ ମେଳରେ ରହି ଲାଭ କଣ ?"

ମାର୍ତ୍ତ କହିଲା, "ଶକ ଘୋଡ଼ା ବ୍ୟବସାୟୀମାନେ ଖୁବ୍ ଭଲ ଭ୍ରମଣ ବନ୍ଧୁ । ଅଶ୍ୱଚାଳନାର କୌଶଳ ଓ ଶକ୍ତିଶାଳୀ ଘୋଡ଼ାଙ୍କ ଯୋଗୁଁ ଖୁବ୍ କମ୍ ଲୋକ ତାଙ୍କୁ ଆକ୍ରମଣ କରିବାକୁ ସାହସ କରନ୍ତି । ଅବଶ୍ୟ ମୁଁ ଘୋଡ଼ା ବେପାରୀଙ୍କଠୁ ଅଲଗା ହୋଇଯିବା ପରେ ବଣିକମାନଙ୍କ ସହିତ ଭ୍ରମଣ କରିଛୁ । ଜଣେ ଅଭିଜ୍ଞ ଦଳପତିଙ୍କ ନେତୃତ୍ୱରେ ସେମାନେ



ଦଳ ଦଳ ହୋଇ ଭ୍ରମଣ କରନ୍ତି । ବିପଦରୁ ରକ୍ଷା ପାଇବା ପାଇଁ ସାଙ୍ଗରେ ସଶସ୍ତ୍ର ରକ୍ଷୀଙ୍କୁ ସେମାନେ ନେଇଆସନ୍ତି । ଅନେକ ଦେଶର କଥା ଓ ବିଶେଷତ୍ୱ ସେମାନେ କହିପାରନ୍ତି । ଉତ୍ତରରୁ ଛେଳି ଲୋମରେ ତିଆରି ନରମ ଗରମ ଲୁଗା ଆସେ । ଓଃ‌ଦଳ ମରୁଭୂମି ଓ ପର୍ବତ ଅତିକ୍ରମ କରି ଚୀନରୁ କନା ବୋହିଆଣନ୍ତି । ଏହି କନା ସୁଦୂର ପାଶ୍ଚାତ୍ୟ ଦେଶରେ ବହୁତ ଆଦୃତ ହୁଏ । ସମ୍ଭ୍ରାନ୍ତ ଓ ଧନଲୋକଙ୍କ ପାଇଁ ମଦ୍ୟପାନ ଓ ମୂଲ୍ୟବାନ ଲାଲ୍ ପଥର ଆଣନ୍ତି ଏଇ ବଣିକମାନେ ଯବନଙ୍କ ଦେଶରୁ ।"

ଏତିକବେଳେ ବୃଦ୍ଧ ସାଆନ୍ତ ବାପା ପଚାରିଲେ, "ତୋ ଭ୍ରମଣ କାଳରେ ଆମ ମଥୁରାର ଜିନିଷ କିଛି ଦେଖିଛୁ ?"

"ଅନେକ," ମାର୍‌ଟ ଉତ୍ତର ଦେଲା । "ଯବନମାନେ ଯାହା ଆଣନ୍ତି, ତା ତୁଳନାରେ ଅନେକ ବେଶି ନେଇଯାଆନ୍ତି, ଯଥା—ନାନା ରଙ୍ଗର ପତଳା କନା, ହୀରା, ମୋତି, ମାଣିକ, ଅଲଙ୍କାର, ଔଷଧ, ଅଳେଇଚ, ହାତୀଦାନ୍ତ ଓ କାରୁକାର୍ଯ୍ୟ । କାବୁଲ୍‌ର ଉତ୍ତରରେ ଥିବା କୁଶାଣ ରଜାମାନଙ୍କର ଗ୍ରୀଷ୍ମନିବାସ କପିସାରେ ମୁଁ ବହୁତ ସୂକ୍ଷ୍ମ ହାତୀଦାନ୍ତ କାମ ଦେଖିଛି, ଯାହା ଆମର ଏଇ ମଥୁରାରେ ତିଆରି ।

"ମଥୁରାର ପଥର ସ୍ତମ୍ଭଫର୍ମ ମୁଁ ଗୃହଆଡ଼େ ଦେଖିଛି । କାବୁଲ୍ ନଦୀ ଓ ଯମୁନା ନଦୀ ଭିତରେ ଥିବା ଅଞ୍ଚଳ ତ ଶିଳ୍ପ, ବାଣିଜ୍ୟ ଓ ଧନର ସାମ୍ରାଜ୍ୟ । ସେଠି ସବୁବେଳେ ଶାନ୍ତି । ଛାଡ଼, ମୁଁ ପରା ବଣିକଦଳଙ୍କ କଥା କହୁଥିଲି !"

ତା'ପରେ ବାପାଙ୍କୁ ଅନାଇ କହିଲା, "ଖଣ୍ଡେ ମାର୍କଣ୍ଡ-ହାଡ଼ କ ଭଙ୍ଗା ପଥର ଖଣ୍ଡେ ପଡ଼ିଆଏ, ମୋତେ ଦେଲେ ମୁଁ ଖୋଦେଇ କରନ୍ତି ।"

ତା ବାପା ରାଗିଯାଇ କହିଲେ, "ମାର୍କଣ୍ଡ ହାଡ଼ ତ ଅତି ଶସ୍ତା । ଆହୁ ବୋଧହୁଏ ପଦରକାଗ୍ର ପଥର ଖଣ୍ଡେ ପଡ଼ିଛି, ଯାହାକୁ ତୁ ନଷ୍ଟକଲେ କିଛି କ୍ଷତି ନାହିଁ !"

ଅନ୍ଧାର ଜମି ଆସିଲା; କିନ୍ତୁ ମା' ପୁଅ ଦୁହେଁ ଅନେକ ସମୟ ଧରି ତାରାର ଆକାଶ ତଳେ ଗପରେ ନିଜକୁ ବୁଡ଼ାଇ ରଖିଲେ ।

# ଏକ ପର୍ଯ୍ୟଟକର କାହାଣୀ

ଦିନେ ସନ୍ଧ୍ୟାବେଳେ ବୃଦ୍ଧ ସାଆନ୍ତ ବାପା କହିଲେ, "ଆଜି ମୋ ନାତିର ଭ୍ରମଣ କାହାଣୀ ଶୁଣିବା ।"

ମାର୍‌ଟ ଆରମ୍ଭ କଲା, "ଏବେ ତ ରାସ୍ତାଘାଟ ବି ଅତି ଶାନ୍ତ । ତେଣୁ କେବଳ ବଣିକଦଳ ନୁହନ୍ତି, ସନ୍ନ୍ୟାସୀ ଓ ଛାତ୍ରମାନେ ମଧ୍ୟ ବିଭିନ୍ନ ଦେଶ ବୁଲୁଛନ୍ତି । ଛାତ୍ରମାନେ ଜ୍ଞାନଶୁଶ୍ରୂଷ । ସେମାନେ ଗୋଟିଏ ବିଶ୍ୱବିଦ୍ୟାଳୟରେ ପାଠବର୍ଷ ପଢ଼ି ସାରି ଅନ୍ୟ ଏକ ବିଶ୍ୱବିଦ୍ୟାଳୟକୁ ଆଉ ପାଠବର୍ଷ ପାଇଁ ପଢ଼ିବାକୁ ଯାଆନ୍ତି । ମୁଁ ପର୍ବତ ସେପଟର ଦେଶମାନଙ୍କୁ ବି ଯାଇଛି । ସେଠାରୁ ଶକ, ପହ୍ଲବ ଓ କୁଷାଣ ରାଜାମାନେ ବିଭିନ୍ନ ସମୟରେ ସମତଳ ଅଞ୍ଚଳକୁ ଆସିଛନ୍ତି ।"

"ସେମାନେ କାହିଁକି ସେ ଦେଶ ଛାଡ଼ି ଆସନ୍ତି ?" ବୃଦ୍ଧ ପଚାରିଲେ । ମାର୍‌ଟ ବୁଝାଇବାକୁ ଲାଗିଲା—"ବରଫାବୃତ ପର୍ବତ ସେପଟେ ଥିବା ଜମିଗୁଡ଼ିକ ଆମର ନଦୀ-ଉପତ୍ୟକା ଓ ସମତଳ ଭୂମିପରି ଉର୍ବର ଓ ଉତ୍ପାଦନକ୍ଷମ ନୁହନ୍ତି । ସେଠି କେବଳ ଉଚ୍ଚ ପର୍ବତ ବା ଥଣ୍ଡା ମରୁଭୂମି । ଯେଉଁ ଟିକିଏ ସମତଳ ଭୂଇଁ ଅଛି, ସେଠି ମେଣ୍ଢା ଚରିବା ଘାସ ଛଡ଼ା ଅନ୍ୟ କିଛି ହୁଏନାହିଁ । ଶୀତ ବେଶି ହେଲେ ବା ଶତ୍ରୁ ଆକ୍ରମଣ କଲେ, ସେଠାର ଅଧିବାସୀମାନେ ସେଠୁ ଅନ୍ୟ ଜାଗାକୁ ଚାଲିଯାଆନ୍ତି । ଅନେକ ଲୋକ ଆମ ଦେଶପରି ସ୍ଥାନମାନଙ୍କୁ ଚାଲିଆସନ୍ତି, ଯେଉଁଠାରେ ସମୃଦ୍ଧ ସହର ଓ ଉର୍ବର ଜମି ଅଛି । ଏହି ଯାଯାବରମାନେ ସମତଳ ଅଞ୍ଚଳର ଲୋକଙ୍କଠାରୁ ବେଶି ବଳୁଆ; କିନ୍ତୁ ସମତଳ ଅଞ୍ଚଳର ଲୋକଙ୍କ ଜ୍ଞାନ ଓ ବୁଦ୍ଧି ପ୍ରତି ସେମାନଙ୍କର ବେଶ୍ ସମ୍ମାନ ଥାଏ । ଯବନ, ଶକ, ପହ୍ଲବ ଓ ଅନ୍ୟମାନେ ପ୍ରଥମେ ପଞ୍ଚନଦୀର ସମତଳ ଭୂମି ପଞ୍ଜାବ ଆସି ସେଠୁ ଦକ୍ଷିଣ ଓ ପୂର୍ବ ଦିଗକୁ ଯାଇଛନ୍ତି । କୁଷାଣମାନେ ମଧ୍ୟ ସେଇବାଟେ ଆସିଛନ୍ତି । ବିଶିଷ୍ଟ କୁଷାଣ ସମ୍ରାଟ୍ କନିଷ୍କଙ୍କର ସର୍ବଶ୍ରେଷ୍ଠ ପ୍ରତିମୂର୍ତ୍ତି ମଥୁରାରେ ତିଆରି ହୋଇଥିଲା । ପୂର୍ବରେ ଚୀନ୍ ସୀମାଠାରୁ କୁଷାଣମାନେ ଯାହା ଆକ୍ରମଣର ପଶ୍ଚିମ ଦିଗରେ ଇରାନ୍ ସୀମା ପର୍ଯ୍ୟନ୍ତ ଯାଇଥିଲେ ।

ସେଠାରୁ ସେମାନେ ଦକ୍ଷିଣମୁଖୀ ହୋଇ ବଲ୍‌ଖ ନଦୀଠାରୁ କାବୁଲ୍ ନଦୀଆଡ଼କୁ ଯାଇଥିଲେ । ତାପରେ ଉଚ୍ଚ ପାହାଡ଼ ରାସ୍ତା ଅତିକ୍ରମ କରି ପଞ୍ଚନଦୀର ଭୂଇଁ ପଞ୍ଜାବରେ ପହଞ୍ଚି ସେଠୁ ଆମର ପ୍ରିୟ ଭୂଇଁରେ ଆସି ପହଞ୍ଚିଥିଲେ । ତାଙ୍କର ମୂର୍ତ୍ତି ଓ ମୁଦ୍ରାମାନଙ୍କରେ ଖୋଦିତ ହୋଇଥିବା ଲେଖାରୁ ଏ ସମସ୍ତ ଇତିହାସ ଜଣାପଡ଼େ । ବେଳେ ବେଳେ ଗୋଟିଏ



ଶାସକର ପ୍ରତିମୂର୍ତ୍ତିରେ ଅଣ୍ଟାରେଖାର ଓଜନଥା ନରମ ପାଦପରିଚ୍ଛଦ, ଇରାନୀ ପହ୍ଲବୀମାନଙ୍କର ମୋଟା କୋଟ୍ ଓ ଶକମାନଙ୍କର ଖାଷ୍ଟ୍ରଣ ଶିରସ୍ତ୍ରାଣ—ଏସବୁ ଏକାଠି ଥିବାର ଦେଖାଯାଏ । ମୂର୍ତ୍ତି ତଳେ ଓ ମୁଦ୍ରାମାନଙ୍କରେ ଖୋଦିତ ଲେଖାରୁ ତାଙ୍କର ଯାହାର ବିବରଣୀ ମିଳେ । ସମ୍ରାଟଙ୍କୁ ମହାରାଜା କୁହାଯାଉଥିଲା । ପୁଣି ରାଜାଧିରାଜ ମଧ୍ୟ କୁହାଯାଉଥିଲା । ଏହି ଇରାନ୍ ଦେଶର ନାମକୁ ପହ୍ଲବୀ ଓ ପାର୍ଥିଆନ ଶାସକମାନେ ବ୍ୟବହାର କଲେ । ପୁଣି ସମ୍ରାଟଙ୍କୁ ଦେବପୁତ୍ର ବା ଦେବତାଙ୍କ ସନ୍ତାନ ବୋଲି କୁହାଗଲା । ଏହି ନାମ ଚୀନରେ ବ୍ୟବହାର କରାଯାଏ । ଏସବୁ ଉପାଧି ସଂସ୍କୃତ ଭାଷାରେ ମଧ୍ୟ ଅଛି । ଶକ ଓ କୁଶାଣ ଶାସକମାନେ ଭାରତୀ ପଣ୍ଡିତଙ୍କ ଭାଷା ସଂସ୍କୃତ ହିଁ ବ୍ୟବହାର କରୁଥିଲେ ।"

ସାଆନ୍ତ ବାପା ଧୀର ସ୍ୱରରେ କହିଲେ, "ସଂସ୍କୃତ ତ ପବିତ୍ର ବେଦର ଭାଷା, ଯାହା କେବଳ ବ୍ରାହ୍ମଣ ଓ ପଣ୍ଡିତମାନେ ହିଁ ଜାଣନ୍ତି !"



“ଠିକ୍ କଥା ।” ମାର୍ଟିନ୍ କହିଲେ, “ରାଜକବି ଓ ରାଜକର୍ମଚାରୀମାନେ ଏହି ଭାଷା ବ୍ୟବହାର କରନ୍ତି । ରାଜାଙ୍କର ସମସ୍ତ ଘୋଷଣା ଓ ଆଦେଶ ସଂସ୍କୃତ ଭାଷାରେ ଦିଆଯାଏ । ସମ୍ରାଟ୍ କନିଷ୍କ ବୁଦ୍ଧଙ୍କର ବିଶିଷ୍ଟ ଭକ୍ତ ଏବଂ ତାଙ୍କୁ ଦ୍ୱିତୀୟ ଅଶୋକ କୁହାଯାଏ । ସେ ଅନେକ ବୌଦ୍ଧ ଆଶ୍ରମ ନିର୍ମାଣ କରିଛନ୍ତି । ତାଙ୍କ ଦରବାରରେ ଅନେକ ଜ୍ଞାନୀପୁରୁଷ ଓ କବିଙ୍କର ସମାବେଶ । ତାଙ୍କ ସମୟରେ ହିଁ ମଥୁରାର ଶିଳ୍ପୀମାନେ ସବୁଠାରୁ ବେଶି ଉତ୍ସାହ ପାଇଛନ୍ତି । ରାଜା, ବଣିକ ଓ ସଂଭ୍ରାନ୍ତ ଲୋକଙ୍କର ତଥା ବୁଦ୍ଧ ଓ ଜୈନ ତୀର୍ଥଙ୍କରମାନଙ୍କର ପଥର ମୂର୍ତ୍ତି ପାଇଁ ଏତେ ଚାହିଦା ଯେ ଶିଳ୍ପୀମାନଙ୍କ ପକ୍ଷରେ ସମସ୍ତ ଚାହିଦା ପୂରଣ କରିବା କଷ୍ଟକର ହୁଏ । ବ୍ରାହ୍ମଣମାନେ ମଧ୍ୟ ଦେବଦେବୀଙ୍କ ମୂର୍ତ୍ତିପାଇଁ ଶିଳ୍ପୀମାନଙ୍କ ପାଖକୁ ଆସନ୍ତି ।”

ବୁଢ଼ା ସାଆନ୍ତ ବାପା କହିଲେ, "ନିର୍ବାଣ ପ୍ରାପ୍ତ ହୋଇଥିବା ମହାନ୍ ଗୁରୁ ବୁଦ୍ଧଦେବଙ୍କ ଜୀବନର ବିଭିନ୍ନ କଥାକୁ ପ୍ରତୀକ ସ୍ୱରୂପରେ କେବଳ ବ୍ୟବହାର କରାଯାଏ ବୋଲି ଆମେ ଜାଣିଛୁ । ତାଙ୍କର ମୂର୍ତ୍ତି ତିଆରି କରିବା ଦୋଷାବହ ବୋଲି ତ ଆମର ଧାରଣା !"

"ହଁ, ସାଆନ୍ତବାପା", ମାରଚ କହିଲା, "ଏପର୍ଯ୍ୟନ୍ତ ଏହି ବିଶ୍ୱାସ ହିଁ ଥିଲା; କିନ୍ତୁ ଦକ୍ଷିଣପଥରେ ରହୁଥିବା ନାଗାର୍ଜୁନ, କନିଷ୍କ ଓ ଅନ୍ୟାନ୍ୟମାନେ ଅନୁଭବ କଲେ ଯେ ଭଗବାନ୍ ବୁଦ୍ଧଙ୍କ ପୂଜା କରିବାପାଇଁ ତାଙ୍କର ଗୋଟିଏ ପ୍ରତିମୂର୍ତ୍ତି ନିହାତି ଦରକାର । ମୁଁ ଯେତେ ଜାଗାକୁ ଯାଇଛି, ସେଠି ବୁଦ୍ଧଙ୍କର ମୂର୍ତ୍ତି ଦେଖିଛି । ତକ୍ଷଶିଳା, ପୁରୁଷପୁର, ଗାନ୍ଧାର ଏବଂ ମଥୁରାରେ ବୁଦ୍ଧମୂର୍ତ୍ତି ସବୁ ଅଛି । ଅଶ୍ୱଘୋଷ ନାମକ ଜଣେ ବ୍ରାହ୍ମଣ ନିଜେ ବୌଦ୍ଧଧର୍ମ ଗ୍ରହଣକରି ସମ୍ରାଟ୍ କନିଷ୍କଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରାଇଥିଲେ । ବର୍ତ୍ତମାନ ବୁଦ୍ଧଙ୍କର ଅନେକ ଅନୁଗାମୀ ଅଛନ୍ତି ଏବଂ ସତ୍ୟର ଉପଲବ୍ଧି ପାଇଁ ସେମାନେ ବିଭିନ୍ନ ବାଟ ଦେଖାଇଛନ୍ତି । ସମ୍ରାଟ୍ କନିଷ୍କ କାଶ୍ମୀର ଉପତ୍ୟକାର କନିଷ୍କପୁରରେ ଗୋଟିଏ ସଭା ଡକାଇ ବୁଦ୍ଧଙ୍କର ସମସ୍ତ ଉପଦେଶ ଆଲୋଚନା କରାଇଥିଲେ ଏବଂ ସମସ୍ତ ଉପଦେଶକୁ ଏକାଠି କରିଥିଲେ । ଏ ଗୁଡ଼ିକ ତାମ୍ରପତ୍ରରେ ଲେଖାହୋଇ ଗୋଟିଏ ବିରାଟ ସ୍ତୂପ ତଳେ ପୋତାଯାଇଛି ଏହି ଆଶାରେ ଯେ, ହଜାରେ ବର୍ଷ ପରେ ମଧ୍ୟ ଲୋକେ ଏଗୁଡ଼ିକ ଜାଣିପାରିବେ ।"

"କିନ୍ତୁ ମହାପୁରୁଷଙ୍କ ଉପଦେଶ କଣ ତାମ୍ରପତ୍ର ଓ ତାଳପତ୍ରରେ ଲେଖିରଖିବା ଠିକ୍ କଥା ?" ବୁଢ଼ା ହଠାତ୍ ପ୍ରଶ୍ନ କଲେ ।

"ନହେଲେ ସେଗୁଡ଼ିକ କପରି ସଂରକ୍ଷିତ ହେବ ?" ମାରଚ କହିଲା ।

ସାଆନ୍ତବାପା କହିଲେ, "ପ୍ରତ୍ୟେକ ଯୁଗର ଜ୍ଞାନପୁରୁଷଙ୍କ ସ୍ମୃତିରେ ତ ସେ ଗୁଡ଼ିକ ରହିଥାଏ !"

ମାରଚ ଉତ୍ତର ଦେଲା, "କିନ୍ତୁ ସେ ଉପଦେଶ ଗୁଡ଼ିକ ଦେଶ ବିଦେଶରେ କିପରି ପ୍ରସ୍ତୁତ ହେବ ? ଅନେକ ବର୍ତ୍ତମାନ ଭାବୁଛନ୍ତି ଯେ ଲେଖିଦେଇ ରଖିଦେଲେ ସେ ବିଷୟରେ ଭବିଷ୍ୟତରେ କଳି ବା ମତଭେଦ ହେବନାହିଁ ।"

"ମହାପୁରୁଷମାନଙ୍କ ଉପଦେଶ ବିଷୟରେ କଣ କାହାର କେବେ ସନ୍ଦେହ ହୋଇପାରେ ?" ବୁଢ଼ା ପଚାରିଲେ ।

"ନିଶ୍ଚୟ", ମାର୍‌ଚ ଉତ୍ତର ଦେଲା । "ବୌଦ୍ଧ ଉପଦେଶ ଭିତରେ ମୁଖ୍ୟତଃ ଦୁଇଟି ମତ ଶୁଣିବାକୁ ମିଳେ । ଦକ୍ଷିଣରେ ସନ୍ନ୍ୟାସୀମାନେ କହନ୍ତି ଯେ ବୁଦ୍ଧ ଏକ ମହାନ୍ ଗୁରୁଦେବ ଯିଏ ନିର୍ବାଣ ଲାଭ କରିଥିଲେ । ତାଙ୍କ ଶିକ୍ଷାକୁ ଯିଏ ଗ୍ରହଣ କରେ, ସେ ପୁନର୍ଜନ୍ମ ଓ ଦୁଃଖରୁ ମୁକ୍ତିପାଏ; କିନ୍ତୁ ଏବେ ଉତ୍ତର ଦିଗର ସନ୍ନ୍ୟାସୀମାନେ କହୁଛନ୍ତି ଯେ ବୁଦ୍ଧ ଗୋଟିଏ ଦେବତା ଏବଂ ଆମେ ତାଙ୍କୁ ପୂଜାକରିବା ଉଚିତ । ସମ୍ରାଟ୍ କନିଷ୍କ ଏହି ସନ୍ନ୍ୟାସୀମାନଙ୍କୁ ସମର୍ଥନ କରନ୍ତି । ସେଥିପାଇଁ ଆମେ ବୁଦ୍ଧ ଓ ଅନ୍ୟାନ୍ୟ ଦେବତାମାନଙ୍କର ମୂର୍ତ୍ତି ତିଆରି କରୁଛୁ ।"

ମାର୍‌ଚ ତା'ପରେ କହିଲା, "ମହାନ୍ କୁଶାଣ ସମ୍ରାଟ୍ କନିଷ୍କ ତାଙ୍କ ରାଜଧାନୀ ପୁରୁଷପୁରରେ ଯେଉଁ ବିହାର ନିର୍ମାଣ କରିଛନ୍ତି, ତାହା ବାସ୍ତବିକ ଚମତ୍କାର । ଏହା ଚଉଦ-ମହଲାର ଏକ ବିରାଟ ପ୍ରାସାଦ । ଏହି ପ୍ରାସାଦ ଶୀର୍ଷରେ ଏକ ଲୁହାର ଚୂଡ଼ା ଅଛି । ସୁନା ଗିଲ୍ଟ ତିଆରି ହୋଇଥିବା ତମ୍ବା ଛତାଦ୍ୱାରା ଏହି କୈାହର୍ଶୀର୍ଷକୁ ଘୋଡ଼ାଯାଇଛି । ଘରଆଡ଼େ ବୁଦ୍ଧଙ୍କର ମୂର୍ତ୍ତି ଶୋଭାପାଉଛି ।"

"ଆମେ ତ ଇମିତ ବିହାର ତିଆରି କରୁନାହିଁ !" ମାର୍‌ଚର ବାପା କହିଲେ ।

ମାର୍‌ଚ ବୁଝାଇ କହିଲା, "ସମ୍ରାଟ୍ ବେଳେବେଳେ ଯବନ କାରିଗରମାନଙ୍କୁ କାମରେ ଲଗାନ୍ତି । ଆଗେ ସାଇଲେସ୍ ନାମକ ଜଣେ ଯବନ ଏହି ବିହାର ନିର୍ମାଣ ଦେଖାଶୁଣା କରିଥିଲେ ।"

କେତକୀ କହିଲା, "ଆଜି ସମସ୍ତେ ଶୋଇବା ସ୍ଥଳ । ତୁ ଯାହାସବୁ ସାଥିରେ ଆଣିଛୁ, କାଲି ସକାଳେ ଦେଖାଇବୁ ।"

## ଉପସ୍ଥାପନା

ତା ପର ଦିନ ସନ୍ଧ୍ୟାବେଳ । ଭ୍ରମଣବେଳେ ମାର୍‌କୋ ଯାହା କିଛି ସଂଗ୍ରହ କରିଥିଲା, ସବୁ ଦେଖାଇବାକୁ ଆରମ୍ଭ କଲା । ତା' ମା' ପାଇଁ ଚକ୍‌ଚକ୍ ଧାତୁରେ ଶାମୁକା ଓ ମାଣିକ ଖଚିତ ହୋଇ ତିଆରି ହୋଇଥିବା ଗୋଟିଏ କଙ୍କଣ ଏବଂ ତା ସାଆନ୍ତ୍ର ବାପା ପାଇଁ ଅଦ୍ଭୁତ ଧରଣର ଗୋଟିଏ ମୋଟା କମ୍ବଳ ଆଣିଥିଲା । କମ୍ବଳଟିକୁ ଦେଖାଇ ସେ କହିଲା, "ଏଟା କାଶ୍ମୀରର କମ୍ବଳ । ସେଠାର ପାହାଡ଼ିଆ ଛେଳିମାନଙ୍କର ଖୁବ୍ ଲମ୍ବା ଲମ୍ବା ଲୋମ ଦ୍ୱାରା ଏହା ତିଆରି ।"

ତା'ପରେ ମାର୍‌କୋ ଯେତେବେଳେ ଗୋଟିଏ ସ୍ୱର୍ଣ୍ଣମୁଦ୍ରା ବାହାର କଲା, ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ । ବୁଢ଼ା ସାଆନ୍ତ୍ରବାପା ପଚାରିଲେ, "ଏଇଟା କେଉଁଠି ପାଇଲୁ ? ଆମେ ତ ଏଠି ତମ୍ବା ମୁଦ୍ରା ବା କଢ଼ଙ୍ଗରେ ଖୋଦେଇ କରୁ । ବେଳେ ବେଳେ ହୁଏତ ରୁପା ମୁଦ୍ରାରେ ବି କରୁ, କିନ୍ତୁ ସ୍ୱର୍ଣ୍ଣ ମୁଦ୍ରା ତ ଆମକୁ କେବେ ମିଳେନାହିଁ !"



ମାର୍‌ଚ ଉତ୍ତର ଦେଲା, "ଜଣେ ଧନୀ ବଣିକର ସହଯାତ୍ରୀମାନଙ୍କୁ ମୁଁ ଡକାୟତଙ୍କ କବଳରୁ ରକ୍ଷା କରିଥିବାରୁ ସେ ମୋତେ ଏଇଟା ଉପହାର ଦେଇଛନ୍ତି । ଏହି ମୁଦ୍ରାକୁ ଦେଖ ବାପା ! ଗୋଟିଏ ପଟେ ଲମ୍ବା ବୁଟ୍‌ଯୋତା ଓ ଅଶ୍ୱାରୋହୀର ପୋଷାକ ପିନ୍ଧିଥିବା ରାଜାଙ୍କର ଚିତ୍ର । ଆରପଟେ ଭଗବାନ୍ ବୁଦ୍ଧଙ୍କର ଚିତ୍ର ଓ ତା' ତଳେ ପଶ୍ଚିମାଞ୍ଚଳରେ ବ୍ୟବହୃତ ଏକ ଅଦ୍ଭୁତ ଭାଷାରେ ବୁଦ୍ଧଙ୍କର ନାମ ଲେଖାଯାଇଛି ।"

ମାର୍‌ଚର ବାପା ମୁଦ୍ରାକୁ ଦୁଇ ତିନି ଥର ହାତରେ ଏପଟ ସେପଟ କରି କହିଲେ, "ବାସ୍ତବିକ୍ ଏହା ଅତି ଉନ୍ନତ କାରିଗରି ।"

ତା ପରେ ମାର୍‌ଚ କହିଲା, "ମୁଁ ଶୁଣିଲି ଯେ ରାଜା ଓ ଭଗବାନ ଉଭୟଙ୍କ ଚିତ୍ର ଖୋଦିତ ଏହି ସ୍ୱର୍ଣ୍ଣମୁଦ୍ରା ସୁଦୂର ପଶ୍ଚିମର ରୋମ୍‌ରୁ ଅଣାଯାଇଛି । ସେମାନେ ଏହି ମୁଦ୍ରା ବଦଳରେ ଆମଠାରୁ ମସଲା, ଅଳଙ୍କାର, ଔଷଧ ଓ ଅତର ଏବଂ ଚୀନ୍ ଲୋକଙ୍କଠାରୁ ରେଶମ ଲୁଗା କିଣନ୍ତି । ଆମ ଶାସକମାନେ ଏହି ମୁଦ୍ରାଗୁଡ଼ିକ ତରଲାଇ ନୂଆ ମୁଦ୍ରା କରି ପ୍ରଚଳନ କରନ୍ତି ।"



ତା' ପରେ ମାର୍‌ଚ ଯେତେବେଳେ ଫେଣ୍ଟେ ବଡ଼ ହାତଦାନ୍ତ ବାହାର କଲ, ତା ବାପା ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତୁ କିମିତ ଏ ହାତଦାନ୍ତ କଣି ପାରିଲୁ ? ଜଣେ ସାଧାରଣ ଶିଳ୍ପୀ ହାତଦାନ୍ତ ପାଇବା ତ ସହଜ କଥା ନୁହେଁ !"

ମାର୍‌ଚ ବୁଝାଇ କହିଲା, "ଆମର ହାତଦାନ୍ତ କାମ ପାଇଁ ଗୁଣଆଡ଼େ ବହୁତ ସୁବିଧା । ବଣିକମାନେ ଅତି ଆଗ୍ରହରେ ଏହି ହାତଦାନ୍ତ ଆଣି ଭଲ କାରିଗରମାନଙ୍କୁ ଖୋଦେଇ ପାଇଁ ଦଅନ୍ତି, ଆଉ ସେଥିରୁ ମଜୁରି ବି ଭଲ ମିଳେ ।"

ତା ବାପା କହିଲେ, "ଆମ ପାଇଁ ମଥୁରାର ଲାଲ୍ ବାଲିପଥର ହିଁ ସବୁଠାରୁ ବଡ଼ ।"

ତା' ପରେ ମାର୍‌ଚ ତା ବାପା ଦେଇଥିବା ଅଦରକାରୀ ପଥର ଖଣ୍ଡିକ ଦେଖାଇ କହିଲା, "ଦେଖ, ଏଥିରେ ମୁଁ କ'ଣ ଖୋଦେଇ କରିଛି ।"

ଗୋଟିଏ ବାଳିକାର ଲମ୍ବା ବାଳରୁ ଟୋପା ଟୋପା ପାଣି ଖସୁଛି, ଆଉ ହଂସଟିଏ ତାର ବେକ ଓ ଥଣ୍ଟକୁ ଲମ୍ବାଇ ଏହି ପାଣିଟୋପାଗୁଡ଼ିକ ଶୋଷିନେଉଛି—ଏହି ଦୃଶ୍ୟ ମାର୍‌ଚ ସେ ପଥରରେ ଆଙ୍କିଥିଲା । ଏଥିରୁ କାରିଗରର ଦକ୍ଷତା ସ୍ପଷ୍ଟ ଜଣାପଡ଼ୁଥିଲା ।

ଏହି ଖୋଦେଇ ଦେଖି ତା ବାପା ଖୁସିହୋଇ ପଚାରିଲେ, "ତୁ ବର୍ତ୍ତମାନ ମଥୁରାରେ ରହିବାକୁ ସ୍ଥିର କରିସାରିଛୁ ତ ?"

ମାର୍‌ଚ ଉତ୍ତର ଦେଲା, "ତୁମେ କ'ଣ ଚାହୁଁଛ ?"

ଏତିକିବେଳେ କେତକୀ କହିଲା, "ମୁଁ ତା ପାଇଁ କନ୍ୟା ଠିକ୍ କରିସାରିଛି— ତୁମ ପାଖେ କାମ କରୁଥିବା ଆମ ପଡ଼ିଶା ଘର କାରିଗରର ଝିଅ ।"

ତା ବାପା ଖୁସିରେ କହିଲେ, "ନିଜ ଜାତିରେ ବାହାହୋଇ ତୋ'ର କୁଶଳୀ ହାତରେ ମଥୁରାରେ କାମ କରିବା ଛଡ଼ା ଆଉ କ'ଣ ତୋଠାରୁ ମୁଁ ଚାହିଁପାରେ ?"

ମାର୍‌ଚ କହିଲା, "ଠିକ୍ ଅଛି । ମୁଁ ଅନେକ ବୁଲିଲିଣି । ପୁଣି ଥରେ ଭ୍ରମଣ କରିବାକୁ ଇଚ୍ଛା ହେବା ପର୍ଯ୍ୟନ୍ତ ମୁଁ ମଥୁରାରେ ରହିବାକୁ କଥା ଦେଉଛି । ଅବଶ୍ୟ ଯଦି ବି ପୁଣି କେବେ ଭ୍ରମଣରେ ଯାଏ, ମଥୁରାକୁ ନିଶ୍ଚୟ ଫେରିଆସିବ ।"

# ସମୁଦ୍ରଗୁପ୍ତଙ୍କ ଯୁଦ୍ଧ ଅଭିଯାନ

## ସମୁଦ୍ରଗୁପ୍ତ ଓ ଅଶ୍ୱରକ୍ଷକର ପୁଅ

୩୪୭ ଖ୍ରୀଷ୍ଟାବ୍ଦରେ ଯେତେବେଳେ ସମୁଦ୍ରଗୁପ୍ତ ଏକ ନୂଆ ଯୁଦ୍ଧ-ଅଭିଯାନରେ ବାହାରିଲେ ସାରା ପାଟଳୀପୁତ୍ରରେ ଉତ୍ତେଜନା ଦେଖାଗଲା ।

୩୨୦ ଖ୍ରୀଷ୍ଟାବ୍ଦରେ ଗଙ୍ଗାନଦୀ ଉପତ୍ୟକାରେ ସମ୍ରାଟ୍ ଚନ୍ଦ୍ରଗୁପ୍ତ ନିଜର କ୍ଷମତା ଜାହିର୍ କରିବା ପୂର୍ବରୁ ଅନେକ ଶତାବ୍ଦୀ ଧରି କ୍ରମାଗତ ଯୁଦ୍ଧ ଲାଗିରହିଥିଲା ।

ଉତ୍ତରାଧିକାରୀ ଭାବରେ ଚନ୍ଦ୍ରଗୁପ୍ତ ତାଙ୍କ ପୁଅ ସମୁଦ୍ରଗୁପ୍ତଙ୍କୁ ବାଛିଥିଲେ । ୩୪୭ ଖ୍ରୀଷ୍ଟାବ୍ଦ ସୁଦ୍ଧା ସମୁଦ୍ରଗୁପ୍ତ ଗଙ୍ଗାନଦୀ ଉପକୂଳବର୍ତ୍ତୀ ଅଞ୍ଚଳର ସମସ୍ତ ରାଜାଙ୍କୁ ଯୁଦ୍ଧରେ ହରାଇ ହିମାଳୟଠାରୁ ନର୍ମଦା ନଦୀ ପର୍ଯ୍ୟନ୍ତ ସମଗ୍ର ଉତ୍ତର ଭାରତରେ ରାଜତ୍ୱ କରୁଥିଲେ । ତା ପରେ ନର୍ମଦା ନଦୀର ଦକ୍ଷିଣରେ ଥିବା ବିନ୍ଧ୍ୟ ଅଞ୍ଚଳକୁ ସେ ତାଙ୍କର ସାମରିକ ଅଭିଯାନ ଆରମ୍ଭ କଲେ । ବିନ୍ଧ୍ୟ ଅଞ୍ଚଳ ଜଙ୍ଗଲ ଓ ପର୍ବତପୂର୍ଣ୍ଣ ଥିଲା ଏବଂ ଯାତାୟାତ ଅତ୍ୟନ୍ତ କଷ୍ଟସାଧ୍ୟ ଥିଲା । ତେଣୁ ସମୁଦ୍ରଗୁପ୍ତଙ୍କ ଏହି ଅଭିଯାନ ଖୁବ୍ ବିପଦସଙ୍କୁଳ ଥିଲା ।

ସମୁଦ୍ରଗୁପ୍ତଙ୍କର ସବୁଠାରୁ ପ୍ରିୟ ଘୋଡ଼ାର ନାଁ ଥିଲା ରାକ୍ଷସ । ମାଲିକଙ୍କର ସାମାନ୍ୟ ଇଙ୍ଗିତରେ ସେ ଆଜ୍ଞା ପାଳନ କରୁଥିଲା ।

ସେଦିନ କିନ୍ତୁ ରାକ୍ଷସ ଖୁବ୍ ଅସ୍ଥିର ଓ ଚଞ୍ଚଳ ଜଣାପଡ଼ୁଥିଲା । ସମୁଦ୍ରଗୁପ୍ତଙ୍କ ବ୍ୟତୀତ ଆଉ ଦୁଇଜଣ ମାତ୍ର ଏହି ଘୋଡ଼ାକୁ ଶାସନ କରିପାରୁଥିଲେ । ଜଣେ ହେଲା ବେଣୁ, ଯିଏ ଏହି ଘୋଡ଼ାଟିକୁ ଛୁଆଟି ଦିନରୁ ଲାଳନପାଳନ କରିଥିଲା । ଅନ୍ୟ ଜଣକ ହେଲା ବେଣୁର ନଅ ବର୍ଷର ପୁଅ, ଯିଏ ତାର ଶିଶୁ ଅବସ୍ଥାରୁ ରାଜାଙ୍କ ଘୋଡ଼ାଶାଳରେ ସମୟ କଟାଉଥିଲା ।

ସେ ଦିନ ବେଣୁକୁ ବହୁତ ଜ୍ୱର । ଅନ୍ୟାନ୍ୟ ସଇସମାନେ ରାକ୍ଷସକୁ ଶାସନ କରିବାକୁ ବହୁତ ଚେଷ୍ଟାକଲେ; କିନ୍ତୁ ତା ପାଖରେ ପହଞ୍ଚିବାମାତ୍ରେ ସେ ସେମାନଙ୍କୁ ଲାତମାରି ଫୋପାଡ଼ିଦେଉଥାଏ ।

ତାପରେ ସଇସମାନେ ନିଜ ନିଜ ଭିତରେ କୁହାକୁହି ହେଲେ, "ବେଣୁର ପୁଅ ଅଶ୍ୱଦତ୍ତ କାହିଁ ?"

ମୁଖ୍ୟ ସଇସ ସୁବର୍ଣ୍ଣ କହିଲା, "କାଲେ ସେ ସୈନ୍ୟମାନଙ୍କ ପଛରେ ଦୌଡ଼ି ଚାଲିଯିବ, ସେହି ଭୟରେ ତା ମା' ବୋଧହୁଏ ତାକୁ ଘରେ ବନ୍ଦକରି ରଖିଛି ।" ଏହା

ଭଳି ସେ ବେଣ୍ଟର ଲୁଚିଆ ଅଡ଼କୁ ଚାଲିଲା ।

ବେଣ୍ଟର ସ୍ତ୍ରୀ ଓ ବୁଢା ମା'କୁ ଘରେ ଦେଖି ସୁବର୍ଣ୍ଣ ପଚାରିଲା, "ଅଶ୍ୱଦତ୍ତ କାହିଁ ?"

"ସେ ନାହିଁ ।" ସେମାନେ ଉତ୍ତର ଦେଲେ ।

ସୁବର୍ଣ୍ଣ କହିଲା, " ତାକୁ କହିଦେବ, ସେ ରାକ୍ଷସଠାରୁ ବିଦାୟ ନେଇ ଆସିବ ।"

ବୁଢ଼ୀଟି ଚିତ୍କାରକରି କହିଲା, "ତୁମେ ବୋଧହୁଏ ଅଶ୍ୱଦତ୍ତକୁ ବନ୍ୟ ଜଙ୍ଗଲର ପାପ ମୂର୍ତ୍ତିକୁ ଠେଲିଦେବାକୁ ଚାହୁଁଛ !"

ସୁବର୍ଣ୍ଣ କହିଲା, "ବେଣ୍ଟର ପୁଅକୁ ମୁଁ ମୋ ନିଜ ପୁଅ ପରି ଇଚ୍ଛା କରେ ।" ଏକଥା କହି ସେ ସେଠୁ ଚାଲିଆସିଲା ।

ସେ ରାତ୍ର ପରେ ନାଗ ଦୁଇଟି ଭଣାବାଣୀ ହେଲେ, "ଜାଲ ଆଡ଼କୁ ସମ୍ରାଟ୍ ନିଶ୍ଚୟ ଚାଲିଯାଇଥିବେ । ତେଣୁ ତାଙ୍କ ପଞ୍ଚବେଳକୁ ଅଶ୍ୱଦତ୍ତକୁ ଖଲାସ କରିଦେବା ।"

ସେଦିନ ସନ୍ଧ୍ୟାବେଳେ ସମ୍ରାଟଙ୍କୁ କହିଦିଆଗଲା, ତାଙ୍କ ପକ୍ଷେ ରାକ୍ଷସକୁ ନେବା ସମ୍ଭବ ନୁହେଁ ।

ଚନ୍ଦ୍ରଗୁପ୍ତ ଘୋଡ଼ାଶାଳକୁ ଗଲେ । ରାକ୍ଷସ ଦୌଡ଼ିଆସିଲା ତାଙ୍କ ପାଖକୁ; କିନ୍ତୁ ଠିକ୍ ପରମୁହୂର୍ତ୍ତରେ ଅନ୍ୟ ସଇସମାନେ ସେତେବେଳେ ଆସିଲେ, ଶକ୍ତିଶାଳୀ ଦାନବ ପରି ରାକ୍ଷସ ସେମାନଙ୍କୁ ଫୋପାଡ଼ିଦେଲା ।

ସମ୍ରାଟ୍ କହିଲେ, "ତୁମ ଭିତରୁ କେହି ଜଣେ ଏହି ଘୋଡ଼ାକୁ ମନାଇବାକୁ ପଡ଼ିବ ।"

ହଠାତ୍ ଗୋଟିଏ ପିଲାଳିଆ ସ୍ୱର ଶୁଣାଗଲା—"ମୁଁ ତାର ସହ ନେବି ।" ସାମ୍ନାରେ ଅଧା ଲଙ୍ଗଳା ମଇଳା କୋଟଟ ଟୋକାଟିଏ । ତାକୁ ଦେଖିବା ମାତ୍ରେ ଘୋଡ଼ାଟି କରୁଣ ଚିତ୍କାର କରି ତା ପାଖକୁ ଦୌଡ଼ିଗଲା । ଟୋକାଟି ନିର୍ଭୟରେ ତା ଦେହ ଆଉଁସିବାକୁ ଲାଗିଲା ।

"ତୁମେ କିଏ ?" ସମ୍ରାଟ୍ ପଚାରିଲେ ।

ସୁବର୍ଣ୍ଣ ଉତ୍ତର ଦେଲା, "ହଁ, ସେ ବେଣ୍ଟୁର ପୁଅ ।"

ତାପରେ ଅଶ୍ୱଦତ୍ତ କହିଲା, "ମୋ 'ସାଆନ୍ତମା' ମୋତେ ଘରେ ବନ୍ଦକରି ରଖିଥିଲେ; କିନ୍ତୁ ସମ୍ରାଟଙ୍କ ସାଙ୍ଗରେ ଯିବାପାଇଁ ମୋର ତ ଅଧିକାର ଅଛି, ତେଣୁ ମୁଁ ବାଡ଼ରେ ଦଣାକରି ଘରୁ ଖସି ପଳାଇଆସିଛି ।"

ସମ୍ରାଟ୍ ମୁରୁକି ହସି କହିଲେ, "ତୁମ ସାହାସ ତ ଆମର ନିହାତି ଦରକାର; କିନ୍ତୁ ତୁମ ମା' ଓ ସାଆନ୍ତମା'ଙ୍କର ଅନୁମତି ଶୀଘ୍ର ଆଣିବାକୁ ହେବ ।"

ସୁବର୍ଣ୍ଣ ଦୌଡ଼ିଯାଇ ସେ ଦୁଇଜଣଙ୍କୁ ନେଇଆସିଲା । ସମୁଦ୍ରଗୁପ୍ତ ପଚାରିଲେ, "ତୁମେ କାହିଁକି ରାଜାଙ୍କ ସହିତ ଯିବାକୁ ତାକୁ ବାଧା ଦେଉଛ ?"

ବୁଢ଼ୀ ସାଆନ୍ତମା' ସାହସର ସହିତ ଉତ୍ତରଦେଲେ, "ମହାରାଜ ! ଅଶ୍ୱଦତ୍ତ ଆପଣଙ୍କ ସହିତ ଯିବାକୁ ଚାହୁଁଛି; ମାତ୍ର ସେ ତ ନଅବର୍ଷର କଅଁଳିଆ ପିଲାଟିଏ । ଯେଉଁଭଳି ତୁମ୍ଭେ ଏବେ ତାଙ୍କ ମା' କୁମାରଦେବୀଙ୍କ ଆଜ୍ଞା ପାଳନ କରନ୍ତି, ଏହି ଛୁଆଟି ସେହିପରି ମୋ ଆଜ୍ଞା ପାଳନ କରିବା ଉଚିତ ।"

ସମ୍ରାଟ୍ ତାଙ୍କ ମା'ଙ୍କୁ ବହୁତ ଭକ୍ତି କରୁଥିଲେ । ପ୍ରାଚୀନ ଓ ଶକ୍ତିଶାଳୀ ଲିଚ୍ଛବି ବଂଶର ଏହି ମହିଳାଙ୍କୁ ବିବାହକରି ଚନ୍ଦ୍ରଗୁପ୍ତ ମଗଧରାଜ୍ୟ ହାସଲ କରିଥିଲେ ।

ସମୁଦ୍ରଗୁପ୍ତ କହିଲେ, "ଏହି ବାଳକକୁ ସାଙ୍ଗରେ ନେବା ପାଇଁ ମୋତେ ଅନୁମତି ଦିଅ । ସୁବର୍ଣ୍ଣ ତାର ଯତ୍ନ ନେବ ।"

ବୃଦ୍ଧା କହିଲା, "ତାକୁ ଜୀବନ୍ତ ଓ ଅକ୍ଷତ ଅବସ୍ଥାରେ ଫେରାଇ ଆଣିବାକୁ ମୋତେ କଥା ଦେଇପାରିବେ ତ ?"

ସୁବର୍ଣ୍ଣ କହିଲା, "ମୋ ନିଜ ସନ୍ତାନର ମୁଁ ଯେମିତି ଯତ୍ନ ନିଏ, ଏହି ଛୁଆଟିର ମଧ୍ୟ ସେମିତି ଯତ୍ନ ନେବ ।"

ତା'ପରେ ଖୁବ୍ ଉତ୍ସାହରେ ଅଶ୍ୱଦତ୍ତ ପ୍ରସ୍ତୁତ ହେଲା ସକାଳର ଯାତ୍ରା ପାଇଁ । ସେ ଏତେ ଉତ୍ତେଜିତ ଥିଲା ଯେ ଯିବାବେଳେ ସେ ନିଜ ଲୋକଙ୍କଠାରୁ ବିଦାୟ ନେଇ ଆସିବାକୁ ମଧ୍ୟ ଭୁଲିଗଲା ।

ଏହାପରେ ଖବରରେ ସମୁଦ୍ରଗୁପ୍ତଙ୍କ ଦକ୍ଷିଣ ଓ ମଧ୍ୟଭାରତ ଆଡ଼କୁ ସାମରିକ ଅଭିଯାନରେ ଅଶ୍ୱଦତ୍ତ ଯୋଗଦେଲା । ସୁବର୍ଣ୍ଣ ତା କଥା ଅନୁସାରେ ଅଶ୍ୱଦତ୍ତର ସମସ୍ତ ଯତ୍ନ ନେଲା । ସମ୍ରାଟଙ୍କ ନିଜ ରୋଷେଇଶାଳରୁ ତା ପାଇଁ ଖାଦ୍ୟ ଆସିଲା । ନର୍ମଦା ନଦୀର ଦକ୍ଷିଣରୁ ଜଙ୍ଗଲ ବେଶି ଘଞ୍ଚ ହୋଇଗଲା ଏବଂ ରାସ୍ତା ମଧ୍ୟ ବହୁତ ଦୁର୍ଗମ ଥିଲା । ରାଜାଙ୍କ ସୈନ୍ୟମାନଙ୍କର ଖାଦ୍ୟ ଥିଲା ବାଜରା, ଜଙ୍ଗଲର ଫଳମୂଳ, ଆଉ ଶିକାରରେ ପାଉଥିବା ଠେକୁଆ, ଚଢ଼େଇ ଇତ୍ୟାଦିଙ୍କ ମାଂସ ।

ପ୍ରାର୍ଥନା କରିବାକୁ ସମ୍ରାଟ୍ ରୋଜ୍ ସକାଳୁ ଉଠି ଜଙ୍ଗଲ ଭିତରକୁ ଯାଉଥିଲେ । ପୂଜା କଲାବେଳେ ସେ ଅସ୍ତ୍ରଶସ୍ତ୍ର ଓ ସାମରିକ ପୋଷାକ ତଳେ ଥୋଇଦେଉଥିଲେ । ଏତିକିବେଳେ ଅଶ୍ୱଦତ୍ତ ମଧ୍ୟ ଅମ୍ବ, ତେନ୍ତୁଳି ଓ ଜଙ୍ଗଲର ଫଳମୂଳ ସଂଗ୍ରହ କରିବାକୁ ବାହାରୁଥିଲା ।

ଦିନେ ସକାଳେ ସମ୍ରାଟ ପୂର୍ବଆଡ଼କୁ ମୁହଁକରି ଠିଆହୋଇଥିଲେ, ହଠାତ୍ ଦେଖିଲେ ଚିତାବାଘଟିଏ ଡେଇଁବାକୁ ଚେଷ୍ଟାକରୁଛି । ଏହି ସମୟରେ ଉପରୁ ସମ୍ରାଟଙ୍କ ହାତକୁ କେହି ଜଣେ ଧନୁ ଓ ଶର ବଢ଼ାଇ ଦେଲା । ଅଶ୍ୱଦତ୍ତ ଗୋଟିଏ ଅମ୍ବଗଛରେ ବସି ବାଘଟିକୁ ଲକ୍ଷ୍ୟ କରୁଥିଲା ।

ସମ୍ରାଟଙ୍କ ଶର ବାଘର ବେକରେ ବାଜିଲା । ଜନ୍ତୁଟି ମରଣ କଷ୍ଟରେ ଛଟପଟିଲା । ତା'ପରେ ରାଜାଙ୍କ ଅନୁଚରମାନେ ଦୌଡ଼ିଆସିଲେ । ସେତେବେଳକୁ ଅଶ୍ୱଦତ୍ତ ବାଘ ଦେହ ଭିତରକୁ ଛୁରୀଟିଏ ଗଳାଇ ସାରିଥିଲା, ଆଉ ମୃତ ବାଘଟି ନିଶ୍ଚଳ ହୋଇ ପଡ଼ିଥିଲା ।

ସମ୍ରାଟ୍ ଅଶ୍ୱଦତ୍ତର ଉପସ୍ଥିତ ବୁଦ୍ଧି ପାଇଁ ତାକୁ ତାରିଫ୍ କଲେ । ସ୍ୱର୍ଣ୍ଣପଟେ ଦେଇସାରି ସମସ୍ତେ ଯେତେବେଳେ ସମ୍ରାଟଙ୍କୁ ପ୍ରଶଂସା କରୁଥିଲେ, ସମ୍ରାଟ୍ କହିଲେ, "ଏହି ଶ୍ରେଷ୍ଠ ପିଲାଟି ହିଁ ପ୍ରଶଂସାର ପାତ୍ର ।"

ଅଶ୍ୱଦତ୍ତ ଫେରି ଦେଖିଲା ଯେ ସୁବର୍ଣ୍ଣର ମୁହଁ ବଡ଼ ଭାରି ଗମ୍ଭୀର । "କେତେଥର କହିଛି, ଜଙ୍ଗଲକୁ ଏକା ନ ଯିବାପାଇଁ !" ସେ କହିଲା ।

"କିନ୍ତୁ ମୁଁ ଜଙ୍ଗଲରେ ରହି ସମ୍ରାଟଙ୍କୁ ସାହାଯ୍ୟ କରିପାରିଥିବା କଣ ବଡ଼ କଥା ନୁହେଁ ?" ଏକଥା କହି ଅଶ୍ୱଦତ୍ତ ସୁବର୍ଣ୍ଣର ବାହୁବେଷ୍ଟନୀରେ ନିଜକୁ ହଜାଇଦେଲା, ଆଉ ସବୁଥର ପରି କଥାଦେଲା ଯେ ଆଉ ଅମାନିଆ ହେବନାହିଁ ।



ତାପରେ ମଧ୍ୟଭାରତର ଘଞ୍ଚ ଅରଣ୍ୟ ଭିତରକୁ ସମୁଦ୍ରଗୁପ୍ତ ଓ ତାଙ୍କ ଦଳ ପ୍ରବେଶ କଲେ । ଜଙ୍ଗଲବାସୀ ଲୋକଙ୍କର ଲଢ଼େଇ କରିବାର ପଦ୍ଧତି ବଡ଼ ଅଦ୍ଭୁତ ଥିଲା । ଦିନ ହେଉ କି ରାତି ହେଉ, ବିଷ ଲଗିଥିବା ତୀର ହଠାତ୍ କେଉଁ ବୁଦାମୂଳରୁ କି ପତ୍ରଗହଳରୁ ଆସି କାହାକୁ ହେଲେ ବି ମାରି ଦେଇପାରେ । ତା ଛଡ଼ା ତ ଅସଂଖ୍ୟ ବାଘ, ଭାଲୁବାଘ ଓ ବିଷାକ୍ତ ସାପ ।

ତଥାପି ସମ୍ରାଟଙ୍କ ସୈନ୍ୟଦଳ ଆଗେଇ ଚାଲିଲେ ଏବଂ ଗୋଟିଏ ପରେ ଗୋଟିଏ ରାଜା ଆତ୍ମ-ସମର୍ପଣ କଲେ । ବିନ୍ଧ୍ୟାଞ୍ଚଳ, ମହାନଦୀ, ଗୋଦାବରୀ ଓ କୃଷ୍ଣା ନଦୀ ଉପତ୍ୟକାର ସବୁ ଅଞ୍ଚଳ ସମୁଦ୍ରଗୁପ୍ତ ଅଧିକାର କଲେ ।

ବ୍ୟାଘ୍ରରାଜଙ୍କ ରାଜ୍ୟରେ ଏକ ବିଷାକ୍ତ ତୀର ଘଞ୍ଚ ଜଙ୍ଗଲ ଭିତରୁ ଆସି ସୁବର୍ଣ୍ଣକୁ ହତ୍ୟା କଲା ।

ତାପରେ ଅଶ୍ୱଦତ୍ତର ଖିଆପିଆରେ ଠିକ୍ ରହିଲା ନାହିଁ ।

ସବୁଦିନ ରାତିରେ ଭୟଙ୍କର ସ୍ୱପ୍ନରେ ତା ନିଦ ଭାଙ୍ଗିବାକୁ ଲାଗିଲା । ଆସ୍ତେ ଆସ୍ତେ ସେ ଏତେ ଦୁର୍ବଳ ହୋଇଗଲା ଯେ ସମ୍ରାଟ୍ ମଧ୍ୟ ବଡ଼ ବ୍ୟସ୍ତ ହୋଇପଡ଼ିଲେ ।

ତାକୁ ଡାକି ସମ୍ରାଟ୍ କହିଲେ, "ତୁମର ଡରିବାର କିଛି କାରଣ ନାହିଁ । ଏଣିକି ମୋ ଶୋଇବା ଘରକୁ ଲାଗିଥିବା କୋଠରୀରେ ତୁମେ ଶୋଇବ । ତୁମର ଦେହ ଖରାପ ହେଲେ ରକ୍ଷକର କିଏ ଯତ୍ନ ନେବ ?"

ତା'ପରେ ଅଶ୍ୱଦତ୍ତ ବେଶ୍ ଶାନ୍ତିରେ ଶୋଇପାରିଲା । ଦିନେ ତାଳ ଓ ପତ୍ରରେ ତିଆରି ସମ୍ରାଟଙ୍କ ଭ୍ରାମ୍ୟମାଣ ପ୍ରାସାଦର ବାହାରେ ସେ ଶୋଇବାକୁ ଯାଉଛି, ହଠାତ୍ ତା କାନରେ ମଧୁର ସଙ୍ଗୀତର ଶବ୍ଦ ଆସି ବାଜିଲା । ଏହି ସଙ୍ଗୀତ ସମ୍ରାଟଙ୍କ ବିସ୍ତୀର୍ଣ୍ଣ କୋଠରୀ ଭିତରୁ ଆସୁଥିଲା । ସଙ୍ଗୀତରେ ମୁଗ୍ଧହୋଇ ସେ ପତ୍ରଡ଼ାଳର ବାଡ଼ ପାଖରେ ବସିଗଲା । ଏତିକିବେଳେ ହଠାତ୍ ଖଣ୍ଡାଟିଏ ଆସି ତା ଦେହରେ ଲାଗିଲା ଏବଂ କେହି ଜଣେ କର୍କଶ ସ୍ୱରରେ ପାଟିକଲା, "ମୂଷା ! ମୂଷା ! ଏଠିକି ମୂଷା କିମିତି ଆସିଲା ?"

ଅଶ୍ୱଦତ୍ତ ଡରିଗଲା; କିନ୍ତୁ ସାହସ ସଞ୍ଚୟ କରି କହିଲା, "ମୁଁ ଅଶ୍ୱଦତ୍ତ । ସମ୍ରାଟଙ୍କ ଘୋଡ଼ା ସଇସର ପୁଅ । ମୁଁ ସଙ୍ଗୀତର ମଧୁର ସ୍ୱର ଶୁଣୁଥିଲି ।"

ପୁଣି କର୍କଶ ସ୍ୱର ଶୁଣାଗଲା, "ତୋର ଏତେ ସାହସ ! ସମ୍ରାଟଙ୍କ ସଙ୍ଗୀତ ବାଦନ ଶୁଣୁଛୁ ! ସମ୍ରାଟଙ୍କ କୋଠରୀ ଭିତରକୁ ଉଙ୍କି ମାରିବାର ଶାସ୍ତି ମୃତ୍ୟୁ, ଜାଣିଛୁ ତ !"

ଏତିକିବେଳେ ଅନ୍ୟ ଏକ ସ୍ୱର କହିଲା, "ଆମ ସମ୍ରାଟ୍ ତ ସଙ୍ଗୀତଜ୍ଞଙ୍କ ଭିତରେ ସମ୍ରାଟ୍ । ପିଲାଟି ଯଦି ତାଙ୍କ ସଙ୍ଗୀତ ପ୍ରତି ଆକୃଷ୍ଟ ହେଲା, ସେଥିରେ ଆଶ୍ଚର୍ଯ୍ୟ ହେବାର



କଣ ଅଛୁ ?" ଅଶ୍ୱଦତ୍ତ ଜାଣିପାରିଲା ଯେ ଏହି ସ୍ୱର ସମ୍ରାଟଙ୍କ ଅନ୍ତରଙ୍ଗ ବନ୍ଧୁ, ଯୋଦ୍ଧା ଓ ଜ୍ଞାନୀ ପଣ୍ଡିତ ହରିସେନଙ୍କର । ହରିସେନ ଭିତରକୁ ଯାଇ ସମ୍ରାଟଙ୍କୁ ସବୁକଥା କହିଲେ ଏବଂ ପିଲାଟିକୁ ଭିତରକୁ ଡାକିନେଲେ ।

ସମ୍ରାଟ ମୁକ୍ତା-ଲଗାର ଢିଲା ପୋଷାକ ପିନ୍ଧିଥିଲେ ଏବଂ ଗୋଟିଏ ଉଚ୍ଚ ଗଦିରେ ଡେରି ଆଉଜାଇ ବସିଥିଲେ । ତାଙ୍କ ହାତରେ ଥିଲା ବୀଣା । ଅଶ୍ୱଦତ୍ତର ସଙ୍ଗୀତ ପ୍ରତି ଆଗ୍ରହ ଦେଖି ସେ ଆଦେଶ ଦେଲେ, "ମୋ କୋଠରୀର ନିକଟତମ କୋଠରୀରେ ଅଶ୍ୱଦତ୍ତ ପାଇଁ ଶଯ୍ୟା ବ୍ୟବସ୍ଥା କର । ମୋ ବୀଣାର ଝଙ୍କାର ତା ଆଖିରେ ନିଦ ଆଣିଦେବ ।"

ସେହି ଦିନଠାରୁ ଅଶ୍ୱଦତ୍ତ ସମ୍ରାଟଙ୍କ ପ୍ରାସାଦ ଭିତରର ସମସ୍ତ ଘଟଣା ଜାଣିବାର ସୁଯୋଗ ପାଇଲା । କଳା ଓ ଅଧ୍ୟୟନରେ ସମ୍ରାଟଙ୍କ ସଙ୍ଗେ ଜୀବନ ଅଲଙ୍କୃତ ହୋଇ ରହିଥିଲା । ସମ୍ରାଟ୍ ନିଜେ ଥିଲେ ଜଣେ ଯୋଦ୍ଧା, କବି, ସଙ୍ଗୀତଜ୍ଞ ଓ ପଣ୍ଡିତ ।

ତା'ପରେ ବହୁତ ସହର ଅଭିଯାନକରି ସେମାନେ ପୂର୍ବ ଉପକୂଳ ବାଟେ ଦକ୍ଷିଣଦିଗକୁ ଆଗେଇ ଚାଲିଲେ । ଏହି ଅଭିଯାନବେଳେ ଅଶ୍ୱଦତ୍ତ ପ୍ରଥମଥର ପାଇଁ ସମୁଦ୍ର ଦର୍ଶନ କଲା ।



ରକ୍ଷସ ଛଡ଼ା ଆଉ ଗୋଟିଏ ଚମତ୍କାର ଘୋଡ଼ା ତାଙ୍କ ସାଥୀରେ ଥିଲା । ଏହି ଘୋଡ଼ାରେ କୌଣସି ଆରୋହୀ ନ ଥିଲେ । ଅଶ୍ୱମେଧ ଯଜ୍ଞ ପାଇଁ ଏହି ଘୋଡ଼ାଟି ଉଦ୍ଦିଷ୍ଟ ଥିଲା । ଯେଉଁ ଅଞ୍ଚଳ ବାଟେ ଏହି ଘୋଡ଼ାଟି ଯାଉଥିଲା, ସେ ଅଞ୍ଚଳ ସମୁଦ୍ରଗୁପ୍ତଙ୍କ ଅଧୀନସ୍ଥ ହେବାକୁ ବାଧ ହେଉଥିଲା । ସମୁଦ୍ରଗୁପ୍ତଙ୍କୁ ଚକ୍ରବର୍ତ୍ତୀ ବୋଲି ଏହି ଅଞ୍ଚଳର ରାଜାମାନଙ୍କୁ ସ୍ୱୀକାର କରିବାକୁ ପଡ଼ୁଥିଲା । ଅର୍ଥାତ୍ ସାମରିକ ଅଭିଯାନ ସମୟରେ ସମ୍ରାଟଙ୍କ ଶକ୍ତି ଓ କ୍ଷମତାର ଚକ୍ର ଯେଉଁଠାରେ ବୁଲୁଥିଲା, ସେଇଠାରେ ସମ୍ରାଟ୍ ହେଉଥିଲେ ଚକ୍ରବର୍ତ୍ତୀ । ସେମାନେ ପାଟଳୀପୁତ୍ରକୁ ଫେରିବା ପରେ ଘୋଡ଼ାଟିକୁ ଯଜ୍ଞବେଦିରେ ସମର୍ପଣ କରିବା କଥା । ଅଶ୍ୱଦଳ ଏହି ଘୋଡ଼ାଟିକୁ ବେଶ୍ ଆଦର କରୁଥିଲା ଓ ଅନେକ ଜିନିଷ ଖାଇବାକୁ ଦେଉଥିଲା ।

କୃଷ୍ଣା ଓ ଗୋଦାବରୀ ନଦୀ ଦୁଇଟିର ମଝିରେ ଥିବା ବେଙ୍ଗୀ ରାଜ୍ୟ ସେମାନେ ଅତିକ୍ରମ କଲେ । ତା' ପରେ ପ୍ରାଚୀନ ଶକ୍ତିପୀଠ କାଞ୍ଚନଗରରେ ଗୋଟିଏ ଦରବାର ବସିଲା । ଦାକ୍ଷିଣାତ୍ୟର ସମସ୍ତ ରାଜା ସମ୍ରାଟଙ୍କୁ ସମ୍ମାନ ପ୍ରଦର୍ଶନ କଲେ । ଲଙ୍କା ବା ଆଧୁନିକ ସିଂହଳର ରାଜା ମେଘବର୍ଣ୍ଣ ମଧ୍ୟ ଏହି ଦରବାରକୁ ଦୂତ ଓ ରତ୍ନ ଅଳଙ୍କାରର ଉପହାର ପଠାଇଥିଲେ ।

ଶେଷରେ ଦାକ୍ଷିଣାତ୍ୟର ପଶ୍ଚିମ ଅଞ୍ଚଳ ବା ଆଧୁନିକ ମହାରାଷ୍ଟ୍ର ବାଟ ଦେଇ ସମୁଦ୍ରଗୁପ୍ତ ଓ ତାଙ୍କ ସେନାବାହିନୀ ନିଜ ରାଜ୍ୟକୁ ଫେରିଲେ। ସେମାନେ ତିନି ବର୍ଷ ଏହି ଅଭିଯାନରେ କଟାଇଥିଲେ। ଶିକାର, ଯୁଦ୍ଧ ଓ ଯୁଦ୍ଧର ପ୍ରସ୍ତୁତିରେ ସମ୍ରାଟ୍ ନିଜେ ନେତୃତ୍ୱ ନେଇଥିଲେ। ରାତିରେ ଧର୍ମ ଆଲୋଚନା, କବିତା ପାଠ ଓ ସଙ୍ଗୀତ ଚର୍ଚ୍ଚା ହେଉଥିଲା। ଅନେକ ଦରବାର ମଧ୍ୟ ଅନୁଷ୍ଠିତ ହେଉଥିଲା, ଯେଉଁଠାରେ ସମ୍ରାଟ୍ ରାଜାମାନଙ୍କଠାରୁ ପ୍ରଶଂସା ଓ ସମ୍ମାନ ଲାଭକରୁଥିଲେ।

ଫେରିବା ବେଳକୁ ଅଶ୍ୱଦତ୍ତ ଅନେକ ବଦଳି ଯାଇଥିଲା। ତାର ଉଚ୍ଚତା ଓ ଦେହର ଓଜନ ବେଶ୍ ବଢ଼ିଯାଇଥିଲା। ତାର ଆଉ ଆଦୌ ଡରଲାଗି ନଥିଲା। ଅଭିଯାନର ଗୁରୁତ୍ୱପୂର୍ଣ୍ଣ ଘଟଣାଗୁଡ଼ିକ ତା' ଉପରେ ବହୁତ ପ୍ରଭାବ ପକାଇଥିଲା।

ଅଶ୍ୱମେଧ ଯଜ୍ଞ ପାଇଁ ଆସିଥିବା ବ୍ରାହ୍ମଣ ଓ ଅନ୍ୟମାନଙ୍କ ଉପସ୍ଥିତିରେ ପାଟଳୀପୁତ୍ର ମୁଖରିତ ହେଲା। ମହାଭାରତରେ ବର୍ଣ୍ଣିତ ଧର୍ମରାଜ ଯୁଧିଷ୍ଠିର ଏହିଭଳି ଏକ ଅଶ୍ୱମେଧ ଯଜ୍ଞ କରାଇଥିଲେ।

ପ୍ରତିଯାତ୍ରାବେଳେ ଅଶ୍ୱଦତ୍ତ ଯଜ୍ଞ-ଘୋଡ଼ାଟିକୁ ବହୁତ ସ୍ନେହ ଓ ଆଦର କରୁଥିଲା। ଯଜ୍ଞ ପୂର୍ବଦିନ ରାତିରେ ଅଶ୍ୱଦତ୍ତ ଲୁଚିଲୁଚି ଯାଇ ତାକୁ ଆଉଁସା ଆଉଁସି କରି ତା'ଠାରୁ ବିଦାୟ ନେଲା। ତା ପରଦିନ ଫୁଲମାଳରେ ତାକୁ ସଜାଇ ବେଦି ଉପରକୁ ନିଆଗଲା ଓ ସେଠି ବଳି ଦିଆଗଲା। ଏହି ଘଟଣାର ସ୍ମୃତିରକ୍ଷା ପାଇଁ ସ୍ୱର୍ଣ୍ଣମୁଦ୍ରା ତିଆରି କରାଯାଇ ବ୍ରାହ୍ମଣମାନଙ୍କୁ ବଣ୍ଟାଗଲା। ସେଥିରୁ ଅଶ୍ୱଦତ୍ତକୁ ଗୋଟେ ମିଳିଥିଲା। ଅଶ୍ୱଦତ୍ତ ତାକୁ ନେଇ ତା ପିତାମାତାଙ୍କୁ ଦେଲା। ଏହି ମୁଦ୍ରାଟି ତାଙ୍କ ସଞ୍ଚିତ ସ୍ୱଳ୍ପ ଧନରେ ମିଶି ତାଙ୍କ ଧନର ମୂଲ୍ୟ ବଢ଼ାଇଲା।

ସେ ଦିନ ରାତିରେ ଅଶ୍ୱଦତ୍ତ ଓ ତାର ବାପା ମା' ଏହି ମୁଦ୍ରାଟିକୁ ଦେଖିବାକୁ ଲାଗିଲେ। ତାହା ଉପରେ ଥିବା ଲେଖାକୁ ସେ ବୁଝାଇଦେଲା। ସେ କହିଲା, "ପୂର୍ବରୁ କୌଣସି ରାଜା ଏପରି ମୁଦ୍ରା ତିଆରି କରି ନ ଥିଲେ। ଏହାକୁ ଦିନାର୍ କୁହାଯାଏ। ଏହି ନୂଆ ଦିନାରଟି ତୁମ ପାଇଁ ଆଣିଛି। ଦେଖ, ତା ଉପରେ ଯେଉଁ ଘୋଡାର ଛବିଟି ଅଛି, ସେଇ ଘୋଡାଟିକୁ ଗତକାଲି ବଳି ଦିଆଯାଇଛି।"

ଅଶ୍ୱଦତ୍ତର ମା କହିଲେ, "ହେଇ ଦେଖ, ମୁଦ୍ରାଟିର ଆର ପାଖରେ ଗୋଟିଏ ଘୋଡ଼ାର ଛବି ଅଛି ।"

ଅଶ୍ୱଦତ୍ତ ବୁଝାଇ କହିଲେ, "ସେ ହେଉଛନ୍ତି ସମ୍ରାଟଙ୍କର ସ୍ତ୍ରୀ ମହାରାଣୀ ଦତ୍ତ ଦେବୀ । ଛବି ତଳେ 'ଅଶ୍ୱମେଧ ଯଜ୍ଞ' ବୋଲି ଲେଖାଯାଇଛି । ଦେଖୁଛ ତ, ମହାରାଣୀଙ୍କୁ ସମ୍ରାଟ୍ କିପରି ସମ୍ମାନ ଦେଉଛନ୍ତି !"

ଆଉ ଗୋଟିଏ ମୁଦ୍ରା ଦେଖାଇ ଅଶ୍ୱଦତ୍ତ କହିଲେ, "ମା', ଏହି ମୁଦ୍ରାଟିକୁ ଦେଖ । ଗୋଟିଏ ପାଖରେ ସମ୍ରାଟ ଢିଲା ଧୋତି ପିନ୍ଧି ହାତରେ ତାଙ୍କର ବାଦ୍ୟଯନ୍ତ୍ର ବୀଣା ଧରି ବସିଛନ୍ତି । ତାଙ୍କ ମୁକୁଟରେ ରତ୍ନ, କାନରେ ହୀରା ଓ ବାହୁରେ ମୂଲ୍ୟବାନ୍ ଅଳଙ୍କାର । ଆରପଟରେ ଅଛି ଲକ୍ଷ୍ମୀଙ୍କର ଚିତ୍ର ।"

ପରେ ଅନେକ ଉପହାର ଧରି ଲଙ୍କାର ରାଜା ମେଘବର୍ଣ୍ଣଙ୍କ ବୌଦ୍ଧ ଦୂତମାନେ ପାଟଳିପୁତ୍ରରେ ପହଞ୍ଚିଲେ । ସମ୍ରାଟଙ୍କ ପାଖରେ ମେଘବର୍ଣ୍ଣଙ୍କର ଗୋଟିଏ ମାଗୁଣି ଥିଲା । ସମ୍ରାଟ୍ ଅଶୋକଙ୍କଦ୍ୱାରା ନିର୍ମିତ ବୋଧଗୟାର ବୌଦ୍ଧ ଆଶ୍ରମରେ ରହିବାକୁ ସ୍ଥାନର ଅଭାବ ବୋଲି ଲଙ୍କାର ବୌଦ୍ଧ ପରିବ୍ରାଜକମାନେ ତାଙ୍କ ରାଜାଙ୍କୁ ଆପତ୍ତି କରିଥିଲେ । ତେଣୁ ଲଙ୍କାର ରାଜା ବୌଦ୍ଧ ତୀର୍ଥସ୍ଥାନମାନଙ୍କରେ ଆଶ୍ରମ ତିଆରି କରିବା ପାଇଁ ସମ୍ରାଟଙ୍କ ଅନୁମତି ଚାହିଁଥିଲେ । ସମ୍ରାଟଙ୍କ ଅନୁମତି କ୍ରମେ ଗୋଟିଏ ଚମତ୍କାର ଆଶ୍ରମ ନିର୍ମାଣ କରାଗଲା ।

ତିନି ମହଲା ବିଶିଷ୍ଟ ଏହି ଆଶ୍ରମରେ ଛଅଟି ବିରାଟ କୋଠରୀ ଥିଲା ଏବଂ ତା'ଉପରେ ତିନୋଟି ସ୍ତମ୍ଭାକୃତ ଗୃହ ନିର୍ମିତ ହୋଇଥିଲା । ତିରିଶ ଫୁଟ ଉଚ୍ଚ ପାଚେରୀ ଏହି ସ୍ତମ୍ଭମାନଙ୍କ ଚାରିପଟେ ଘେରି ରହିଥିଲା । ଭିତରେ ଥିଲା ଭଗବାନ ବୁଦ୍ଧଙ୍କର ଏକ ବିରାଟ ମୂର୍ତ୍ତି । ଏହି ମୂର୍ତ୍ତି ସୁନା ଓ ରୁପାରେ ତିଆରି ହୋଇଥିଲା ଓ ବହୁ ମୂଲ୍ୟବାନ୍ ରତ୍ନରେ ଶୋଭା ପାଉଥିଲା । ମୂଲ୍ୟବାନ୍ ରତ୍ନ ପାଇଁ ଲଙ୍କା ପ୍ରସିଦ୍ଧ ଥିଲା ।

ସମ୍ରାଟ ଓ ତାଙ୍କ ଉତ୍ତରାଧିକାରୀ ମହାରାଣୀ ଦତ୍ତ ଦେବୀଙ୍କ ପୁତ୍ର, ସମସ୍ତେ ବିଷ୍ଣୁଭକ୍ତ ଥିଲେ । ତେଣୁ ବୌଦ୍ଧମାନଙ୍କ ପ୍ରତି ସମ୍ରାଟ୍‌ଙ୍କ ଏହି ଉଦାରତା ଦେଖି ଅଶ୍ୱଦତ୍ତର ମା ଆଶ୍ଚର୍ଯ୍ୟ ହେଲେ । ଅଶ୍ୱଦତ୍ତ ପୁଣି ବୁଝାଇ କହିଲା ଯେ ଗୁପ୍ତ ରାଜସଭରେ ଖୁବ୍ ସମ୍ମାନିତ ଆସନ ଅଳଂକୃତ କରିଛନ୍ତି ବିଖ୍ୟାତ ବୌଦ୍ଧ-ପଣ୍ଡିତ ବସୁବନ୍ଧୁ ।

ସମ୍ରାଟ ସମୁଦ୍ରଗୁପ୍ତଙ୍କ ବୟସ ବଢିବାରେ ଲାଗିଲା । ତାଙ୍କର ବନ୍ଧୁ ପଣ୍ଡିତ ହରିସେନ ଏହି ମହାସମ୍ରାଟଙ୍କ ପ୍ରଶଂସା କରି ଏକ ସୁନ୍ଦର ସଂସ୍କୃତ କାବ୍ୟ ଲେଖିଥିଲେ । ପାଖ ଶହ ବର୍ଷ ଧରି ଦୃଢ଼ହୋଇ ରହିଥିବା କୌଶମ୍ବୀର ପଥର ସ୍ତମ୍ଭରେ ଏହି କାବ୍ୟଟି ଲିପିବଦ୍ଧ କରାଯାଇଥିଲା ।

ଅଶ୍ୱଦତ୍ତ ତା ପିତାମାତାଙ୍କୁ ଏହି କାବ୍ୟର ସାରାଂଶ ବୁଝାଇ ଦେଇଥିଲା । ପୂର୍ବ, ଦକ୍ଷିଣ ଓ ଉତ୍ତର ଦିଗକୁ ସମ୍ରାଟଙ୍କ ସାମରିକ ଅଭିଯାନଠାରୁ କବିତା ଓ ସଙ୍ଗୀତରେ ସମ୍ରାଟଙ୍କ ପାରଦର୍ଶିତା ପର୍ଯ୍ୟନ୍ତ ସମସ୍ତ ବିଷୟ ଏହି କାବ୍ୟରେ ବର୍ଣ୍ଣନା କରାଯାଇଥିଲା ।

ଅଶ୍ୱଦତ୍ତର ମା କହିଲା, "ତୁ ଯେଉଁଦିନ ଆମକୁ ଛାଡ଼ି ପ୍ରଥମ ଥର ପାଇଁ ସମ୍ରାଟଙ୍କ ସହିତ ଦୂରକୁ ଗଲୁ, ସେଇଦିନଠାରୁ ଆଜି ଭିତରେ ତୁ କେତେ ଭ୍ରମଣ କରିଛୁ ଆଉ କେତେ କଥା ଶିଖିଯାଇଛୁ ! ଏ ସବୁ ପାଇଁ ରାକ୍ଷସକୁ କୃତଜ୍ଞତା ଜଣାଇବା କଥା । କାରଣ ତୋ ବିନା ସେ ସମ୍ରାଟଙ୍କ ସାଙ୍ଗରେ ଯିବାକୁ ଆଦୌ ରାଜିହୋଇନଥାନ୍ତା ।"

# ମହାନ ସମ୍ରାଟ ହର୍ଷ

## ଯୁବକ ହର୍ଷ କନୌଜର ରାଜା

ବିନ୍ଧ୍ୟାଞ୍ଚଳର ଗଭୀର ଜଙ୍ଗଲରେ ତରୁଣ ଜଣେ ସ୍ତ୍ରୀଲୋକ ଗୋଟିଏ ଚିତାଗ୍ନି ପାଖରେ ଅତି ବିମର୍ଷ ଭାବରେ ବସିଥିଲେ ।

ଏହି ତରୁଣ ଜଣେ ସ୍ତ୍ରୀଲୋକ ଜଙ୍ଗଲ ଅଞ୍ଚଳର କଳା ଓ ଗେଡ଼ା ସ୍ତ୍ରୀ ଲୋକଙ୍କଠାରୁ ଅଲଗା ଦିଶୁଥିଲେ । ବିଶେଷତଃ ସବୁଠାରୁ ଯାନ ନାରୀଟିର ଚେହେରାରେ ରାଜକୀୟ ଗାମ୍ଭୀର୍ଯ୍ୟ ଥିଲା ।

ସେ ଥିଲେ ରାଜକୁମାରୀ ରାଜ୍ୟଶ୍ରୀ । ମହାରାଜ ସ୍କନ୍ଦଗୁପ୍ତଙ୍କ ପରଠାରୁ ହୁନ୍‌ମାନେ ଯେଉଁ ଥାନେଶ୍ୱର ରାଜ୍ୟକୁ ବାରମ୍ବାର ଆକ୍ରମଣ କରୁଥିଲେ, ସେହି ରାଜ୍ୟର ରାଜା ଥିଲେ ରାଜ୍ୟଶ୍ରୀର ପିତା । ସେ ହୁନ୍‌ମାନଙ୍କ ହାତରୁ ରାଜ୍ୟକୁ ରକ୍ଷାକରି ସେଇ କ୍ଷୁଦ୍ର ରାଜ୍ୟର ମର୍ଯ୍ୟାଦା ବଢାଇଥିଲେ ।

ଥାନେଶ୍ୱର ରାଜାଙ୍କର ଦୁଇଟି ପୁଅ ଥିଲେ । ସେମାନଙ୍କ ନାମ ଥିଲା ରାଜ୍ୟବର୍ଦ୍ଧନ ଓ ହର୍ଷ । ସେତେବେଳେ କନୌଜ ରାଜ୍ୟ ଓ ନଗର ଆର୍ଯ୍ୟାବର୍ତ୍ତର ସମସ୍ତ ରାଜ୍ୟ ଓ ନଗର ଭିତରେ ସର୍ବୋତ୍ତମ ଥିଲା । ଥାନେଶ୍ୱର ରାଜାଙ୍କ ଝିଅ ରାଜ୍ୟଶ୍ରୀ ସେହି କନୌଜ ରାଜ୍ୟର ଶାସକଙ୍କୁ ବିବାହ କରିଥିଲେ ।

ହଠାତ୍ ଥରେ ଉତ୍ତର ଆଡ଼ୁ ହୁନ୍‌ମାନେ ଆକ୍ରମଣ କରୁଥିବା ଖବର ପହଞ୍ଚିଲା । ରାଜକୁମାର ରାଜ୍ୟବର୍ଦ୍ଧନଙ୍କ ନେତୃତ୍ୱରେ ରାଜା ଗୋଟିଏ ସେନାବାହିନୀ ପଠାଇଲେ । ଏହି ସେନାବାହିନୀ ସହିତ ପନ୍ଦର ବର୍ଷର ବାଳକ ହର୍ଷ ମଧ୍ୟ ଯାଇଥିଲେ । ଅଳ୍ପବୟସ୍କ ହର୍ଷଙ୍କୁ ହିମାଳୟର ପାଦଦେଶରେ ଗୋଟିଏ ଅଶ୍ୱବାହିନୀ ସହିତ ଛାଡ଼ିଦେଇ ରାଜ୍ୟବର୍ଦ୍ଧନ ଆଗେଇ ଚାଲିଲେ । ହର୍ଷ ସେଇ ସ୍ଥାନରେ ଶିକାର କରି ନିଜର ସମୟ ବେଶ୍ ଉପଭୋଗ କଲେ ।

ତା' ପରେ ଖବର ଆସିଲା ଯେ ରାଜା ମୃତ୍ୟୁଶଯ୍ୟାରେ ପଡ଼ିଛନ୍ତି । ହର୍ଷ ଯଥାଶୀଘ୍ର ନିଜ ପିତାଙ୍କର ଶଯ୍ୟା ପାଖକୁ ଚାଲିଗଲେ । ଦ୍ରୁତଗାମୀ ଓଃ ଆରୋହୀ ଦଳକୁ ପଠେଇ ଦିଆଗଲା ରାଜ୍ୟବର୍ଦ୍ଧନଙ୍କୁ ଖବର ଦେବାପାଇଁ । ସେତେବେଳକୁ ରାଜକୁମାର ରାଜ୍ୟବର୍ଦ୍ଧନ ହୁନମାନଙ୍କ ଶରରେ ଆହତ ହୋଇଥାନ୍ତି । ବିପଦ ପରେ ବିପଦ ଆସି ପହଞ୍ଚିଲା ।

ଥାନେଶ୍ୱରର ଦୁର୍ବଳତାର ସୁଯୋଗ ନେଇ ପଶ୍ଚିମ ମାଳ୍ୱାର ରାଜା କନୌଜ ଆକ୍ରମଣ କଲେ ଓ କନୌଜ ରାଜାଙ୍କୁ ହତ୍ୟାକରି ରାଜକୁମାରୀ ରାଜ୍ୟଶ୍ରୀଙ୍କୁ ବନ୍ଦୀ କଲେ ।

ରାଜକୁମାର ରାଜ୍ୟବର୍ଦ୍ଧନ ଦ୍ରୁତଗତିରେ ଆସି ମାଲ୍ୱା ରାଜାଙ୍କୁ ପରାଜିତ କଲେ; କିନ୍ତୁ ରାଜ୍ୟବର୍ଦ୍ଧନଙ୍କର ଅଜାଣତରେ ରାଜ୍ୟଶ୍ରୀ ଜଣେ ଗୁପ୍ତବଂଶୀୟ ରାଜକର୍ମଚାରୀ ସାହାଯ୍ୟରେ ବନ୍ଦିଶାଳାରୁ ଖସିଗଲେ ଓ ଜଣେ ସନ୍ନ୍ୟାସୀଙ୍କ ସାହାଯ୍ୟରେ ବିନ୍ଧ୍ୟାଞ୍ଚଳ ଜଙ୍ଗଲର ଗୋଟିଏ ବୌଦ୍ଧ ଆଶ୍ରମରେ ପହଞ୍ଚିଲେ ।

ବର୍ଦ୍ଧନ ଭାଇ ଦୁଇଜଣ ଅତି ଅସୁବିଧା ଅବସ୍ଥାରେ ଥାଆନ୍ତି । ଗୌଡ଼ ବା ଆଧୁନିକ ପଶ୍ଚିମ ବଙ୍ଗର ରାଜା ଶଶାଙ୍କ ରାଜ୍ୟବର୍ଦ୍ଧନଙ୍କ ବନ୍ଧୁ ବୋଲି ନିଜକୁ ଛଳନାକରି ତାଙ୍କୁ ଗୋଟିଏ ସଭାକୁ ନିମନ୍ତ୍ରଣ କଲେ । ରାଜା ଶଶାଙ୍କ ପ୍ରକୃତରେ ମାଲ୍ୱା ରାଜାଙ୍କ ବନ୍ଧୁ ଥିଲେ । ରାଜ୍ୟବର୍ଦ୍ଧନ କୌଣସି ସୈନ୍ୟ ଓ ଅସ୍ତ୍ର ନନେଇ ସେହି ସଭାରେ ପହଞ୍ଚିଲେ । ସେଠାରେ ତାଙ୍କୁ ନିଷ୍ଠୁର ଭାବେ ହତ୍ୟା କରାଗଲା ।

ବର୍ତ୍ତମାନ ହର୍ଷଙ୍କ ଉପରେ ହିଁ ସବୁକିଛି ଦାୟିତ୍ୱ ପଡ଼ିଲା । ନିଜ ଭାଇଙ୍କ ହତ୍ୟାର ପ୍ରତିଶୋଧ ନେବାପାଇଁ ଏବଂ ଭଉଣୀକୁ ମୁକୁଳାଇବା ପାଇଁ ସେ ତୁରନ୍ତ ଅଭିଯାନ ଆରମ୍ଭ କଲେ ।

ସେତେବେଳକୁ ରାଜକୁମାରୀ ହତାଶ ହୋଇସାରିଥାନ୍ତି । ଦେହ ଓ ମନ ଉଭୟ ଖୁବ୍ ଦୁର୍ବଳ ହୋଇପଡ଼ିଥାଏ । କିଛି କାଠ ସଂଗ୍ରହକରି ସେଥିରେ ନିଆଁ ଲଗାଇ ସେ ସେଥିରେ ଝାସ ଦେବେ ବୋଲି ମନସ୍ଥ କଲେ । ତାଙ୍କ ସହଚରୀମାନଙ୍କୁ କହିଲେ, "ବାପା, ଭାଇ, ସ୍ୱାମୀ ସମସ୍ତେ ତ ମରିଗଲେ—ଏବେ ମୋତେ ଆଉ କିଏ ରକ୍ଷା କରିବ ? ମୁଁ ବଞ୍ଚି ଆଉ ଲାଭ କଣ ?"



"ତଥାପି ତୁମର ସବୁଠାରୁ ପ୍ରିୟ ଭାଇ ତ ବଞ୍ଚିଛନ୍ତି ! ଜଙ୍ଗଲର ସର୍ଦ୍ଦାରମାନେ ତାଙ୍କୁ ଆମ ପାଖରେ ପହଞ୍ଚାଇ ଦେବେ ବୋଲି କଥା ଦେଇଛନ୍ତି ।" ରାଜ୍ୟଶ୍ରୀଙ୍କ ସହଚରୀମାନେ କହିଲେ ।

"ସେ ବୟସରେ ଏତେ ସାନ, ଅଥଚ ତା ଉପରେ ଦାୟିତ୍ୱ ଏତେ ବେଶି !" ରାଜ୍ୟଶ୍ରୀ କହିଲେ ।

ଅନେକ ଦିନ ବିତିଗଲା; କିନ୍ତୁ କୌଣସି ସାହାଯ୍ୟର ସୂଚନା ମିଳିଲାନାହିଁ । ଶେଷରେ ରାଜ୍ୟଶ୍ରୀ ନିରାଶ ହୋଇ କହିଲେ, "ଆସନ୍ତା କାଲି ମୁଁ ନିଆଁରେ ଝାସ ଦେବି । ଚାଲ, ଆଜି ରାତିଟା ପ୍ରାର୍ଥନା କରି ବିତାଇ ଦେବା । କାଲି ସକାଳେ ଅଗ୍ନି ମୋର ସବୁ ଦୁଃଖକୁ ଜାଳିଦେବ ।"

କିନ୍ତୁ ସକାଳୁ ରାଜ୍ୟଶ୍ରୀଙ୍କ ଭାଗ୍ୟର ପରିବର୍ତ୍ତନ ଦେଖାଗଲା । ଦିନ ରାତି ଯାତ୍ରାକରି ଠିକ୍ ସମୟରେ ହର୍ଷ ତାଙ୍କ ଭଉଣୀଙ୍କ ପାଖରେ ପହଞ୍ଚିଗଲେ । ରାଜ୍ୟଶ୍ରୀଙ୍କ ସହଚରୀମାନେ ମଧ୍ୟ ନିଜକୁ ଜାଳିଦେବା ପାଇଁ ସ୍ଥିର କରିସାରିଥିଲେ । ଠିକ୍ ଯେତେବେଳେ ନିଆଁ ଲଗାଇ ସେମାନେ ଡେଇଁବାକୁ ଯାଉଥିଲେ, ହର୍ଷ ତାଙ୍କ ଭଉଣୀକୁ ଟାଣିଆଣିଲେ ।

"ହର୍ଷ, ତୁମେ ଆସିଛ !" ରାଜ୍ୟଶ୍ରୀ ବାଷ୍ପରୁଦ୍ଧ କଣ୍ଠରେ ପଚାରିଲେ, "ଆମ ଚାରିପଟେ ଘେରି ରହିଥିବା ପିଶାଚମାନଙ୍କ ତୁଳନାରେ ଆମର କି ଶକ୍ତି ଅଛି ? ତୁମେ ତ ସବୁବେଳେ ଜ୍ଞାନ ଅର୍ଜ୍ଜନ କରିବାକୁ ଚାହୁଁଥିଲ—ଶାସକ ହେବାର ଲକ୍ଷ୍ୟ ତ ତୁମର ନ ଥିଲା ।"

ହର୍ଷ ଉତ୍ତର ଦେଲେ, "ଆସ, ଯେଉଁ ସୂର୍ଯ୍ୟଙ୍କୁ ଆମର ପିତୃପୁରୁଷ ପୂଜାକରି ଆସିଛନ୍ତି ଏବଂ ଯେଉଁ ସୂର୍ଯ୍ୟ ଆଜି ନୂଆ ଦିନ ଓ ନୂଆ ଜୀବନର ସଙ୍କେତ ଦେଉଛନ୍ତି, ପ୍ରଥମେ ତାଙ୍କୁ ଆମେ ଧନ୍ୟବାଦ ଦେବା ।" ତା'ପରେ ତାଙ୍କ ସାଙ୍ଗରେ ଥିବା ପ୍ରବକ ପଣ୍ଡିତଙ୍କୁ ସେ ଚାହିଁଲେ । ପଣ୍ଡିତ ଜଣକ ସୂର୍ଯ୍ୟସ୍ତୁତି ଗାନକଲେ ।

ତା'ପରେ ସେମାନେ ଫେରିଲେ ଏବଂ କନୌଜ ଓ ଥାନେଶ୍ୱରର ସିଂହାସନ ଆରୋହଣ କଲେ । ଏଥିପାଇଁ ଉଭୟ ରାଜ୍ୟର ମନ୍ତ୍ରୀମାନେ ସ୍ୱୀକୃତି ଦେଲେ । ଅବଶ୍ୟ ହର୍ଷଙ୍କ ଅଳ୍ପ ବୟସ ହେତୁ କେତେଜଣ ଆପତ୍ତି କରିଥିଲେ; କିନ୍ତୁ ଅଭିଜ୍ଞ ଓ ବୃଦ୍ଧ ସେନାପତି ସିଂହାନନ୍ଦ ତାଙ୍କୁ ରାଜା କରିବା ପାଇଁ ଉପଦେଶ ଦେଇଥିଲେ ।

606 ଖ୍ରୀଷ୍ଟାବ୍ଦର ଏହି ଘଟଣାଠାରୁ ଆରମ୍ଭ ହେଲା ହର୍ଷ ଯୁଗ ।

# କନୌଜର ସୁବର୍ଣ୍ଣ ଯୁଗ

ଏହାର ପଞ୍ଚତିରିଶି ବର୍ଷ ପରେ ହର୍ଷବର୍ଦ୍ଧନ, ତାଙ୍କ ଭଉଣୀ ଓ ତାଙ୍କ ପଣ୍ଡିତଙ୍କୁ ଏକ ସମ୍ପୂର୍ଣ୍ଣ ଭିନ୍ନ ପରିସ୍ଥିତିରେ ଦେଖିବାକୁ ମିଳେ । ସେମାନେ ରାଜନଗର କନୌଜରେ ରହୁଥିଲେ । ସୁରକ୍ଷିତ କନୌଜ ନଗରର ପଶ୍ଚିମ ପଟେ ଥିଲା ଗଙ୍ଗା ଓ ଅନ୍ୟ ତିନି ପଟେ ଥିଲା ଗଭୀର ଖାଲ ଓ ମଝିରେ ମଝିରେ ଉଚ୍ଚ ପ୍ରାସାଦ । ସୁନ୍ଦର ମନ୍ଦିର, ବୌଦ୍ଧ ବିହାର ଏବଂ ଇଟା ଓ କାଠରେ ତିଆରି ସୁଶୋଭିତ ଘର ସବୁ ନଗରରେ ତିଆରି ହୋଇଥିଲା ।

ହର୍ଷ ବର୍ତ୍ତମାନ ଆର୍ଯ୍ୟାବର୍ତ୍ତର ଶାସକ ଥିଲେ । ରାଜ୍ୟଶ୍ରୀ ହର୍ଷଙ୍କ ପାଖରେ ବସି ପଣ୍ଡିତମାନଙ୍କ ଆଲୋଚନା ଶୁଣୁଥିଲେ ଏବଂ ନିଜେ ମଧ୍ୟ ଆଲୋଚନାରେ ଅଂଶ ଗ୍ରହଣ କରୁଥିଲେ । ବିଭିନ୍ନ ଧର୍ମ ଓ ଧର୍ମପନ୍ଥା ବିଷୟରେ ରାଜା ଖୁବ୍ ଆଗ୍ରହୀ ଥିଲେ ଏବଂ ନାଟ୍ୟକଳାରେ ମଧ୍ୟ ସେ ଆଗ୍ରହ ଦେଖାଉଥିଲେ । ତେଣୁ ତାଙ୍କର ପଣ୍ଡିତ ବିଭିନ୍ନ ଉତ୍ସବ ଆୟୋଜନ କରିବାରେ ବ୍ୟସ୍ତ ଥିଲେ ।

"ନାଗାନନ୍ଦ" ନାମକ ଏକ ନାଟକ ପରିବେଷଣ କରାଯାଇଥିଲା ଏହି ପଣ୍ଡିତଙ୍କ ପରିଚାଳନାରେ । ଏକ ପୁରାତନ ବୌଦ୍ଧ କାହାଣୀକୁ ଭିତ୍ତିକରି ହର୍ଷ ନିଜେ ଏହି ନାଟକଟି ରଚନା କରିଥିଲେ । ନାଟକଟି ଦେଖିସାରି ପଣ୍ଡିତଙ୍କ ପୁଅ ପୁଣ୍ଡରୀକ ତାଙ୍କର ଦୁଇଜଣ ସାଙ୍ଗ ବସୁଭୂତ ଓ ଅପ୍ସମ୍‌ଙ୍କ ସହିତ ଆଲୋଚନା କରୁଥିଲେ । ପୁଣ୍ଡରୀକ କହିଲେ "ଅଶୋକ, ସମୁଦ୍ରଗୁପ୍ତ ଓ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କପରି ଆମ ସମ୍ରାଟ ମହାନ୍ । 'ନାଗାନନ୍ଦ' ନାଟକଟିରେ ଜୀମୂତବାହାନର ଯେଉଁ ଚରିତ୍ର ଦିଆଯାଇଛି, ତାହା ପୂରାପୂରି ସମ୍ରାଟଙ୍କ ନିଜ ଚରିତ୍ରର ଚିତ୍ରଣ ବୋଲି ବାପା କହୁଥିଲେ । ଜୀମୂତବାହନ ଏକାଧାରରେ ଦୟାଳୁ, ଶାନ୍ତ, ଉଦାର ଓ ସ୍ୱାର୍ଥତ୍ୟାଗୀ ।"

ଅପ୍ସମ୍ କହିଲେ, "କିନ୍ତୁ ପୁଣ୍ଡରୀକ, ସମ୍ରାଟ୍ ଅଶୋକ ତ ଯୁଦ୍ଧ ତ୍ୟାଗକରି ଶାନ୍ତିର ପଥ ଅନୁସରଣ କରିଥିଲେ । ଅନ୍ୟ ପକ୍ଷରେ ସମୁଦ୍ରଗୁପ୍ତ ଉତ୍ତରପଥ ଓ ଦକ୍ଷିଣପଥର କର୍ତ୍ତା ଥିଲେ । ଆମ ସମ୍ରାଟ ଉଭୟଙ୍କ ସହିତ କିପରି ତୁଳନୀୟ ହେବେ ?"

ବସୁଭୂତ ଏହି କଥାରେ ଖିଅ ଧରି କହିଲେ, "ଯେଉଁ ରାଜାଙ୍କର ଯୁଦ୍ଧବାହିନୀରେ ପାଞ୍ଚ ହଜାର ହାତୀ, କୋଡ଼ିଏ ହଜାର ଅଶ୍ୱାରୋହୀ ଓ ପଚାଶ ହଜାର ପଦାତିକ ସୈନ୍ୟ ଥିଲେ, ତାଙ୍କର ବର୍ତ୍ତମାନ ଷାଠିଏ ହଜାର ହାତୀ ଏବଂ ଏକ ଲକ୍ଷ ଅଶ୍ୱାରୋହୀ !"

ଏହାର ଉତ୍ତରରେ ପୁଣ୍ୟରାଜ କହିଲେ, "ହର୍ଷଙ୍କୁ ଶାନ୍ତି ଶୃଙ୍ଖଳା ସ୍ଥାପନ କରିବା ପାଇଁ ଯୁଦ୍ଧ କରିବାକୁ ପଡ଼ିଥିଲା । ଦୁର୍ଦ୍ଧର୍ଷ ହୁନ୍‌ମାନେ ଗୁପ୍ତ ସାମ୍ରାଜ୍ୟକୁ ଧ୍ୱଂସ କରିସାରିବା ପରେ ଆର୍ଯ୍ୟାବର୍ତ୍ତରେ କୌଣସି ସମ୍ରାଟ ନଥିଲେ ।

"ତେଣୁ ଛଅ ବର୍ଷ ଅନବରତ ଯୁଦ୍ଧକରି ସୈନ୍ୟମାନେ ବିଖଣ୍ଡିତ ରାଜ୍ୟକୁ ଗୋଟିଏ ଶାସନାଧୀନ କଲେ । ବର୍ତ୍ତମାନ ହିମାଳୟଠାରୁ ନର୍ମଦା ପର୍ଯ୍ୟନ୍ତ, ନେପାଳ ସମେତ ସମସ୍ତ ଗଙ୍ଗା ଉପତ୍ୟକାକୁ ହର୍ଷ ଶାସନ କରୁଛନ୍ତି । ପୁଣି କାମରୂପ ( ଆଧୁନିକ ଆସାମ )



ଠାରୁ ପଶ୍ଚିମର ବଲ୍ଲଭୀ ପର୍ଯ୍ୟନ୍ତ ସବୁ ଶାସକ ତାଙ୍କ ଆଦେଶ ପାଳନ କରୁଛନ୍ତି । କାମରୂପର ରାଜା ସମ୍ରାଟଙ୍କ ବନ୍ଧୁ ଏବଂ ବଲ୍ଲଭୀର ଶାସକ ତାଙ୍କର ଜ୍ୱାଇଁ ।"

ପ୍ରଭାକର ପଣ୍ଡିତ ପିଲଙ୍କର କଥାବାର୍ତ୍ତା ଶୁଣୁଥିଲେ । ସେ କହିଲେ, "କିନ୍ତୁ ହର୍ଷଙ୍କର ମୁଖ୍ୟ ଚିନ୍ତା ହେଉଛି ତାଙ୍କ ପ୍ରଜାମାନଙ୍କର ମଙ୍ଗଳ । ତାଙ୍କ ରାଜ୍ୟରେ ପରିବ୍ରାଜକଙ୍କ ପାଇଁ ଆଶ୍ରୟସ୍ଥଳୀ ଏବଂ ମଣିଷ ଓ ପଶୁମାନଙ୍କପାଇଁ ଚିକିତ୍ସାଳୟ ନିର୍ମାଣ କରାଯାଇଛି । ଚୋର ଧରିବା ପାଇଁ ଚୌରଧାରିକମାନେ ନିଯୁକ୍ତ ହୋଇଛନ୍ତି । ଶସ୍ୟ ଅମଳବେଳେ ଗାଁଗୁଡ଼ିକୁ



ଜଗିବା ପାଇଁ ବିଶେଷ ବ୍ୟବସ୍ଥା କରାଯାଇଛି । ରାଜା ନିଜେ ବୁଲି ବୁଲି ଗାଁ, ସହର ଓ ଗ୍ରାମମାନଙ୍କରେ ଶାନ୍ତି ଶୃଙ୍ଖଳା ଅଛି କି ନାହିଁ ଦେଖୁଛନ୍ତି ।"

ବସୁଭୂତି ପଚାରିଲା, "ରାଜା କିପରି ତାଙ୍କର ଦିନ କଟାନ୍ତି ?"

ପଣ୍ଡିତ ବୁଝାଇ କହିଲେ, "ଦିନର କିଛି ସମୟ ଶାସନ କାର୍ଯ୍ୟରେ କଟେ । ରାଜା ତାଙ୍କର ମନ୍ତ୍ରୀମାନଙ୍କଠାରୁ ରାଜ୍ୟର ବିଭିନ୍ନ ଅଞ୍ଚଳର ଖବର ବୁଝନ୍ତି ଏବଂ ଲିଖିତ ଖବର ପଠାନ୍ତି । ଖବର ନେବା ଆଣିବା କରିବା ପାଇଁ ଗୋଟିଏ ସ୍ୱତନ୍ତ୍ର ବିଭାଗ ସୃଷ୍ଟି କରାଯାଇଛି । ମାତ୍ର ଓଟଙ୍କ ପିଠିରେ ଖୁବ୍ ଦ୍ରୁତଗତିରେ ରାଜାଙ୍କଠାରୁ ବିଭିନ୍ନ ଅଞ୍ଚଳକୁ ଖବର ପଠାଯାଏ । ରାଜଧାନୀ କନୌଜରେ ତାଙ୍କର ଦୈନନ୍ଦିନ କାର୍ଯ୍ୟକ୍ରମ ଯାହା, ଦୂର ଅଭିଯାନବେଳେ ପଟତାଳର ଭ୍ରାମ୍ୟମାଣ ପ୍ରାସାଦରେ ମଧ୍ୟ ତାଙ୍କର ସେହି କାର୍ଯ୍ୟକ୍ରମ । ନଚେତ୍ ଅସଂଖ୍ୟ ଦାୟିତ୍ୱକୁ ତୁଲାଇବା ସମ୍ଭବ ହେବନାହିଁ ।"

ପଣ୍ଡିତ କହିଚାଲିଲେ, "ଦିନର କିଛି ଅଂଶ ଦାନଧର୍ମରେ କଟେ । ଧର୍ମପ୍ରଚାରକ, ଶିକ୍ଷାନୁଷ୍ଠାନ ଓ ଗରିବ ଲୋକଙ୍କୁ ରାଜା ଅର୍ଥ ଦାନ କରନ୍ତି । ଏଗୁଡ଼ିକ ସୁସଙ୍ଗଠିତ ଭାବେ ପରିଚାଳିତ ହୁଏ । ରାଜାଙ୍କ ରୋଷେଇଶାଳରେ ପ୍ରତ୍ୟେକ ଦିନ ଅନେକ ବୌଦ୍ଧ ସନ୍ନ୍ୟାସୀ ଓ ବ୍ରାହ୍ମଣ ଭୋଜନ କରନ୍ତି ।"

ଏତିକିବେଳେ ଅସୁମ୍ କହିଲା, "ବୌଦ୍ଧଧର୍ମ ପ୍ରତି ରାଜା କାହିଁକି ଏତେ ଆଗ୍ରହ ଦେଖାନ୍ତି ? ତାଙ୍କର ପୂର୍ବପୁରୁଷମାନେ ତ ବୌଦ୍ଧ ନଥିଲେ !"

ପଣ୍ଡିତ ଉତ୍ତର ଦେଲେ, "ଆମ ରାଜାଙ୍କ ପୂର୍ବପୁରୁଷମାନେ ବିଭିନ୍ନ ଦେବଦେବୀ ପୂଜା କରି ଆସିଛନ୍ତି । ତାଙ୍କର ବଡ଼ ପୂର୍ବପୁରୁଷର କେହି ଜଣେ ଶିବଙ୍କୁ ପୂଜା କରୁଥିଲେ । ରାଜାଙ୍କ ପିତା ପ୍ରଭାକରବର୍ଦ୍ଧନ ସୂର୍ଯ୍ୟଦେବତା ଆଦିତ୍ୟଙ୍କୁ ପୂଜା କରୁଥିଲେ । ପ୍ରତ୍ୟେକ ଦିନ ରତ୍ନଖଚିତ ପାତ୍ରରେ ନାଲି ପଦ୍ମଫୁଲ ସେ ଆଦିତ୍ୟଙ୍କୁ ଅର୍ପଣ କରୁଥିଲେ । ସମ୍ରାଟ ହର୍ଷ ଶିବମନ୍ଦିର, ସୂର୍ଯ୍ୟମନ୍ଦିର ଏବଂ ବୌଦ୍ଧମନ୍ଦିର ତିଆରି କରାଇଛନ୍ତି । ନାଳନ୍ଦାର ପ୍ରସିଦ୍ଧ ବୌଦ୍ଧ ବିଶ୍ୱବିଦ୍ୟାଳୟର ସେ ଜଣେ ପୃଷ୍ଠପୋଷକ । ପ୍ରତ୍ୟେକ ପାଞ୍ଚବର୍ଷରେ ଥରେ ରାଜା ଏକ ସଭାର ଆୟୋଜନ କରନ୍ତି । ଦୂରଦୂରାନ୍ତରର ଜ୍ଞାନୀ ପଣ୍ଡିତମାନେ ସେଠି ଆଲୋଚନା କରନ୍ତି ଓ ଜ୍ଞାନର ଆଦାନ ପ୍ରଦାନ କରନ୍ତି ।"

ବସୁଭୂତ ପଚାରିଲେ, "ଏହି ସଭାରେ ବୋଧହୁଏ ଅନେକ ଦାନଧର୍ମ କରାଯାଏ ?"

ପଣ୍ଡିତ ଉତ୍ତର ଦେଲେ, "ପାଞ୍ଚବର୍ଷ ଭିତରେ ଯେତେ ଧନ ସଞ୍ଚିତ ହୋଇଥାଏ, ସେଗୁଡ଼ିକ ଗରିବ ଲୋକ, ବୌଦ୍ଧସନ୍ନ୍ୟାସୀ ଓ ବ୍ରାହ୍ମଣମାନଙ୍କୁ ବାଣ୍ଟିଦିଆଯାଏ । ରାଜା ତାଙ୍କ ନିଜର ଅଳଙ୍କାର ଏବଂ ଏପରିକି ନିଜର ପୋଷାକ ମଧ୍ୟ ଦାନ କରିଦିଅନ୍ତି । ନିଜେ ତାଙ୍କ ଭଉଣୀଙ୍କଠାରୁ ପୋଷାକ ମାଗି ପିନ୍ଧନ୍ତି । ଏହି ରତ୍ନ ଓ ପୋଷାକରୁ ମିଳିଥିବା ଧନକୁ ନେଇ ବୌଦ୍ଧସନ୍ନ୍ୟାସୀମାନେ ପବିତ୍ର ଧର୍ମଶାସ୍ତ୍ରର ନକଲ ତିଆରି କରିବାରେ ଖର୍ଚ୍ଚ କରନ୍ତି ।"

"ରାଜାଙ୍କର ଅନ୍ୟାନ୍ୟ ଦୈନନ୍ଦିନ କାର୍ଯ୍ୟକଳାପ କଣ ?" ବସୁଭୂତ ପଚାରିଲେ ।

ପଣ୍ଡିତ କହିଲେ, "ଦିନର କିଛି ସମୟ ସାହିତ୍ୟ ଆଲୋଚନାରେ କଟେ । କବିମାନେ ନିଜର ଲେଖା ଆବୃତ୍ତି କରନ୍ତି ଏବଂ ସେମାନଙ୍କ ଭିତରେ ପ୍ରତିଯୋଗିତା ମଧ୍ୟ ହୁଏ । ହର୍ଷ ନିଜେ କେତୋଟି ନାଟକ ଓ ଗୋଟିଏ ବ୍ୟାକରଣ ବହି ଲେଖିଛନ୍ତି । ରାଜାଙ୍କର ଅନ୍ତରଙ୍ଗ ବନ୍ଧୁ ବାଣଭଟ୍ଟ ଜଣେ ବିଖ୍ୟାତ ଲେଖକ ।" ଏତିକି କହି ପଣ୍ଡିତ ଭିତରକୁ ଚାଲିଗଲେ ।

ଅପ୍ସମ୍ କହିଲେ, "ଭୁର୍ଜ ଗଛର ବକଳକଳ ଉପରେ ଲିଖିତ ବାଣଭଟ୍ଟଙ୍କର ଗୋଟିଏ ଗପ ବାପା ମୋତେ ଦେଇଥିଲେ । ତାଙ୍କର ସଂସ୍କୃତ ଭାଷା ବୁଝିବା ବଡ଼ କଷ୍ଟ । ଏବେ ସେ ହର୍ଷଙ୍କ ଜୀବନୀ ଲେଖୁଛନ୍ତି । ସେ ବହିଟିର ନାମ 'ହର୍ଷଚରିତ' ।"

ବସୁଭୂତ କହିଲେ, "ଆମ ରାଜାଙ୍କ ଭାଷା ବେଶ୍ ସରଳ ଓ ସୁନ୍ଦର । 'ନାଗାନନ୍ଦ' ନାଟକଟି ମୋତେ ଖୁବ୍ ଭଲଲାଗିଲା । ଏଥିରେ ରାଜା ଜୀମୂତବାହନ, ନାଗରାଜ ବିଷ୍ଣୁଙ୍କ ବାହନ ଗରୁଡ଼ ପାଖରେ ନିଜକୁ ସମର୍ପଣ କରି ନାଗବଂଶକୁ ରକ୍ଷା କରିଛନ୍ତି । ହର୍ଷଙ୍କ ଅକ୍ଷର ବି ବେଶ୍ ସୁନ୍ଦର ।"

ପୁଣ୍ଡରୀକ କହିଲେ, "ନାଳନ୍ଦା ବିଶ୍ୱବିଦ୍ୟାଳୟରେ ପଢ଼ିବାକୁ ମୋର ବହୁତ ଇଚ୍ଛା । ସେଠାକାର ପାଠାଗାର ହେଉଛି ଗୋଟିଏ ତିନିମହଲା କୋଠା, ଯେଉଁଠି ହଜାର ହଜାର ପାଣ୍ଡୁଲିପି ରଖିବାକୁ ସ୍ଥାନ କରାଯାଇଛି ।" ବସୁଭୂତ କହିଲେ, "ମୋର ମଧ୍ୟ ନାଳନ୍ଦା ଯିବାକୁ ଇଚ୍ଛା । ସେଠି ଥିବା ବରିଷ୍ଠ ପାଣ୍ଡିତ୍ୟ ସମସ୍ତ ଉତ୍ତରପଥର ସମସ୍ତଙ୍କୁ ସ୍ୱୀକୃତ ।"

ପୁଣ୍ଡ୍ରକ କହିଲେ, "ଆମକୁ ସେଠି ପ୍ରବେଶପାଇଁ ବଳୁଯିବ କି ନାହିଁ ସନ୍ଦେହ । କାରଣ ନାଳନ୍ଦାର ଛାତ୍ରମାନେ ମୂଳରୁ ହିଁ ଜ୍ଞାନୀ । ଦ୍ୱାର ପରୀକ୍ଷକମାନେ ପ୍ରବେଶ ଇଚ୍ଛୁକ ପ୍ରାର୍ଥୀମାନଙ୍କୁ ପ୍ରଶ୍ନ ପଚାରନ୍ତି ଏବଂ ଦଶଜଣରୁ ଦୁଇ ତିନି ଜଣ ହିଁ ମନୋନୀତ ହୁଅନ୍ତି ।"

ବସୁବ୍ରତ କହିଲେ, "ସେଠି ତ ପ୍ରାୟ ପାଞ୍ଚ ହଜାର ଛାତ୍ର ରହନ୍ତି ।" ପୁଣ୍ଡ୍ରକ କହିଲେ, "ସେମାନେ ଦେଶର ବିଭିନ୍ନ ଅଞ୍ଚଳର । ଲଙ୍କା, ଯବଦ୍ୱୀପ, ସୁବର୍ଣ୍ଣଦ୍ୱୀପ (ଜାଭା ଓ ସୁମାତ୍ରା) ଇତ୍ୟାଦି ବିଦେଶ ସ୍ଥାନରୁ ମଧ୍ୟ ଅନେକ ସେଠିକି ଯାଆନ୍ତି ।"

ଅସୀମ୍ କହିଲେ, "ଯଦି ବା ସେଠି ସ୍ଥାନ ମିଳେ, ତଥାପି ସେଠିକାର ବାର୍ଷିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ସହଜ ନୁହେଁ । ଯେଉଁମାନେ ଉତ୍ତୀର୍ଣ୍ଣ ହୁଅନ୍ତି, ସେମାନଙ୍କ ଗଳାରେ ଫୁଲମାଳ ଦେଇ ସୁସଜ୍ଜିତ ହାତୀ ଉପରେ ବସାଇ ସହରସାରା ବୁଲେଇ ନିଆଯାଏ । ଯେଉଁମାନେ ଅକୃତକାର୍ଯ୍ୟ ହୁଅନ୍ତି, ସେମାନଙ୍କ ମୁହଁରେ କଳା ବୋଳି, ଗଧ ପିଠିରେ ବସାଇ ଛାଡ଼ିଦିଆଯାଏ ।"

ବସୁବ୍ରତ କହିଲେ, "ତାହାହେଲେ ମୁଁ ଓ ପୁଣ୍ଡ୍ର ନାଳନ୍ଦା ଯିବା କଥା ଭୁଲିଯିବା ହିଁ ଭଲ ।"



## କନୌଜରେ ଧର୍ମସଭା

ପ୍ରସ୍ତର ପଣ୍ଡିତ ଶାନ୍ତୁ ଦରବାରରେ ଯାଉଥିବା ବେଳେ ପିଲାମାନେ ତାଙ୍କୁ ଅଟକାଇ କହିଲେ, "ଆମକୁ ନାଲନ୍ଦା ବିଷୟରେ କିଛି କହନ୍ତୁ ।"

ପଣ୍ଡିତ କହିଲେ, "ବିଦେଶରୁ ଆସିଥିବା ଜଣେ ଚୀନା ପଣ୍ଡିତ ହୁଏନ୍ ଚୁଆଙ୍ଗଙ୍କ ଅଭ୍ୟର୍ଥନା ପାଇଁ ମୋତେ ବ୍ୟବସ୍ଥା କରିବାକୁ ପଡ଼ିବ । ଜଣେ ପରିବ୍ରାଜକ ଛଦ୍ମବେଶରେ ସେ ନାଲନ୍ଦା ଯାଇଥିଲେ । ସେ ବେଶ୍ ବିଖ୍ୟାତ ପଣ୍ଡିତ ଥିଲେ । ଜ୍ୟେଷ୍ଠ ମହନ୍ତ ଶୀଲଭଦ୍ର ତାଙ୍କୁ ନାଲନ୍ଦା ଭିତରକୁ ପାଛୋଟି ନେଇ-ଗଲେ । ଦୁଇଶହ ସନ୍ନ୍ୟାସୀ ଫୁଲ, ପତାକା ଓ ଧୂପକାଠି ଧରି ଏକ ଶୋଭାଯାତ୍ରାରେ ତାଙ୍କୁ ହତା ଭିତରକୁ ଆଣିଲେ । ଘଣ୍ଟ-ଧ୍ୱନି ପରେ ହୁଏନ୍ ଚୁଆଙ୍ଗଙ୍କୁ ନାଲନ୍ଦାରେ ରହିବା ପାଇଁ ଅନୁରୋଧ କରାଗଲା ଏବଂ ତାଙ୍କର ଅଧ୍ୟୟନ ପାଇଁ ସବୁ ସାହାଯ୍ୟ ଦିଆଯିବ ବୋଲି ସାଦର ପ୍ରତିଶ୍ରୁତି ଦିଆଗଲା ।"

"ତାହାହେଲେ ସେ ନାଲନ୍ଦା ଛାଡ଼ି ଆସିଲେ କାହିଁକି ?" ପୁଣ୍ଡରୀକ ପ୍ରଶ୍ନ କଲେ ।

ପଣ୍ଡିତ କହିଲେ, "ହର୍ଷବ-

[illegible]ଳର ସମସ୍ତ ରାଜା ତାଙ୍କ ଦରବାରରେ ଏହି ମହାପୁରୁଷଙ୍କୁ ଦେଖିବାକୁ ଚାହିଁଲେ । ନାଳନ୍ଦାକୁ ଯିବା ଆଗରୁ ହୁଏନ୍ ତ୍ସାଙ୍ଗଙ୍କୁ କାଶ୍ମୀରର ରାଜା ଅତି ସମ୍ମାନର ସହିତ ଅଭ୍ୟର୍ଥନା କରିଥିଲେ । ତାଙ୍କର ଯିବା ବାଟରେ ଫୁଲ ଓ ଅତର ଛିଞ୍ଚାଯାଇଥିଲା । ସେଠି ଗୋଟିଏ ବୌଦ୍ଧ ଆଶ୍ରମରେ ରହି ସେ ଦୁଇବର୍ଷ କାଳ ସଂସ୍କୃତ ଭାଷା ଶିଖିଥିଲେ । ବିଶିଷ୍ଟ ବୌଦ୍ଧଗ୍ରନ୍ଥମାନ ନକଲକରି ତାଙ୍କ ସହିତ ଚୀନ୍‌କୁ ପଠାଇବା ପାଇଁ ରାଜା କୋଡ଼ିଏ ଜଣ ଲିପିକାରଙ୍କୁ ନିଯୁକ୍ତ କରିଥିଲେ । ନାଳନ୍ଦାରେ ପହଞ୍ଚିବା ଆଗରୁ ଅନ୍ୟାନ୍ୟ ବୌଦ୍ଧ ଆଶ୍ରମରେ ମଧ୍ୟ ସେ ରହିଥିଲେ । ଆମର ସମ୍ରାଟ ଓ କାମରୁପର ରାଜା ଭାସ୍କର ଧର୍ମ ଓ ଦର୍ଶନ ବିଷୟରେ ତାଙ୍କଠାରୁ ବକ୍ତୃତା ଶୁଣିବାକୁ ଆଗ୍ରହ ପ୍ରକାଶକଲେ । ସିଏ କିନ୍ତୁ ନାଳନ୍ଦାରେ ଅଧ୍ୟୟନରେ ବାଧା ଦେଇ ବକ୍ତୃତା ଦେବାକୁ ମନାକଲେ । ଏଥିରେ କାମରୁପର ରାଜା କ୍ରୁଦ୍ଧ ହୋଇଯାଇ ନାଳନ୍ଦାକୁ ପୋଡ଼ିଦେବାର ଧମକ ଦେଲେ । ସେହିଦିନଠାରୁ ହୁଏନ୍ ତ୍ସାଙ୍ଗ୍ କାମରୁପ ରାଜଦରବାରରେ ରହିଲେ । ହର୍ଷ ଯେତେବେଳେ ଶୁଣିଲେ ଯେ ଏହି ଜ୍ଞାନୀ ବ୍ୟକ୍ତି ତାଙ୍କର ଅନୁଗତ ରାଜା ଭାସ୍କର ପାଖରେ ଅଛନ୍ତି, ସେ ତୁରନ୍ତ ତାଙ୍କୁ ପଠାଇବା ପାଇଁ ଭାସ୍କରଙ୍କୁ ଖବର ଦେଲେ । ଭାସ୍କର ଉତ୍ତର ଦେଲେ, ସମ୍ରାଟ ତାଙ୍କ ମୁଣ୍ଡ କାଟି ନେଇପାରନ୍ତି; କିନ୍ତୁ ତାଙ୍କ ଅତିଥିଙ୍କୁ ନେଇପାରିବେ ନାହିଁ । ହର୍ଷ ରାଗିଯାଇ ତାଙ୍କ ମୁଣ୍ଡ କାଟି ପଠାଇବାକୁ ଆଦେଶ ଦେଲେ । ତେଣୁ ବାଧ୍ୟହୋଇ ରାଜା ଭାସ୍କର ଚୀନ ପଣ୍ଡିତଙ୍କୁ ସାଙ୍ଗରେ ନେଇ ନିଜେ ପହଞ୍ଚିଲେ । ଆମର ରାଜା ହୁଏନ୍ ତ୍ସାଙ୍ଗ୍‌ଙ୍କୁ ସମ୍ମାନର ସହିତ ସ୍ୱାଗତ କଲେ ଏବଂ କୌଣସି ତତ୍ତ୍ୱ ବିଷୟରେ ତାଙ୍କୁ କହିବାକୁ ଅନୁରୋଧ କଲେ । ତାଙ୍କ ବକ୍ତୃତାରେ ରାଜା ଏତେ ଖୁସି ହୋଇଗଲେ ଯେ ଧର୍ମ ବିଷୟରେ ଏକ ତର୍କ ସଭାର ଆୟୋଜନ କରିବା ପାଇଁ ଆଦେଶ ଦେଲେ । ଏହି ବିଦ୍ୱାନ୍ ପଣ୍ଡିତଙ୍କୁ ତର୍କରେ କିଏ ହରାଇପାରେ ଦେଖିବାକୁ ସମ୍ରାଟ ଅପେକ୍ଷା କରିଛନ୍ତି । ରାଜା ତାଙ୍କୁ ଉପାଧି ମଧ୍ୟ ପ୍ରଦାନ କରିପାରନ୍ତି ।

“ଏହି ତର୍କ ସଭା ପାଇଁ ପ୍ରସ୍ତୁତ ଆରମ୍ଭ ହୋଇଗଲାଣି । ସମସ୍ତ ଅତିଥିମାନଙ୍କ ପାଇଁ ରହିବାର ଓ ଖାଇବାର ବ୍ୟବସ୍ଥା କରାଯାଇଛି ।

“ହଜାର ହଜାର ବୌଦ୍ଧ ସନ୍ନ୍ୟାସୀ ଆସିଗଲେଣି । କେବଳ ନାଳନ୍ଦାରୁ ଏକ ହଜାର ସନ୍ନ୍ୟାସୀ ଆସିଛନ୍ତି । ହର୍ଷଙ୍କ ଆନୁଗତ୍ୟ ସ୍ୱୀକାର କରିଥିବା ଅଠର ଜଣ ରାଜା ସଦଳବଳ ଏଠି ଆସି ରହିଛନ୍ତି । କାମରୁପର ରାଜା ଭାସ୍କର ଓ ବଲ୍ଲଭୀର ରାଜା ଧ୍ରୁବସେନ ସମ୍ରାଟଙ୍କୁ ଆୟୋଜନରେ ସାହାଯ୍ୟ କରୁଛନ୍ତି ।

“ସହରର ବାହାରେ ଏକ ବିସ୍ତୀର୍ଣ୍ଣ ଜାଗାକୁ ଘେରେଇ ଦିଆଯିବ । ଏହାର ଫାଟକରେ

ଏକ ଉଚ୍ଚ ସ୍ତମ୍ଭ ନିର୍ମାଣ କରାଯିବ । ହୁଏନ୍ ତ୍ସାଙ୍ଗ୍ ଏହି ସଭାରେ ସଭାପତିତ୍ୱ କରିବେ । ସେ ତାଙ୍କ ମତକୁ ସଭାରେ କହିବେ ଏବଂ ତାଙ୍କ ମତକୁ ଖଣ୍ଡନ କରିବା ପାଇଁ ସମସ୍ତଙ୍କୁ ଆହ୍ୱାନ କରିବେ ।”

ଏହି ବିରାଟ ତର୍କସଭାରେ ଯୋଗ ଦେବା ପାଇଁ ପୁଣ୍ଡ୍ରକ ଓ ତାଙ୍କ ସାଙ୍ଗମାନେ ଅନୁମତି ପାଇଗଲେ । ହୁଏନ୍ ତ୍ସାଙ୍ଗଙ୍କ ମତାମତ ଏକ ଧଳା କନାରେ ନାଲି ଅକ୍ଷରରେ ଲେଖାଗଲା ଏବଂ ଉଚ୍ଚ ଫାଟକ ଉପରେ ଟାଙ୍ଗିବାପାଇଁ ସମ୍ମୃତ ଜନ ଥିବା ପଣ୍ଡିତଙ୍କ ପୁଅ ପୁଣ୍ଡ୍ରକଙ୍କୁ ଦାୟିତ୍ୱ ଦିଆଗଲା ।

ଅନ୍ୟ ଏକ ଉଚ୍ଚ ସ୍ତମ୍ଭର ଶୀର୍ଷରେ ବୁଦ୍ଧଙ୍କର ଏକ ସୁନା ମୂର୍ତ୍ତି ସ୍ଥାପନ କରାଗଲା ଏବଂ ଏହି ସ୍ତମ୍ଭ ତଳେ ହୁଏନ୍ ତ୍ସାଙ୍ଗ୍ ଓ ଅନ୍ୟାନ୍ୟ ବିଶିଷ୍ଟ ଅତିଥିମାନଙ୍କ ପାଇଁ ଆସନର ବ୍ୟବସ୍ଥା କରାଗଲା ।

ତର୍କ ସଭା ଷୋଳଦିନ ଧରି ଚାଲିଲା । ପରିବ୍ରାଜକ ମହାଯାନ ବୌଦ୍ଧଧର୍ମ ବିଷୟରେ ଏତେ ସହଜ ଓ ସୁନ୍ଦର ଭାବରେ କହିଲେ ଯେ ସମ୍ରାଟ ଓ ତାଙ୍କ ଭଉଣୀ ଅଭିଭୂତ ହୋଇଗଲେ ।

ତାଙ୍କୁ ବିରୋଧ କରୁଥିବା ପଣ୍ଡିତମାନେ ନିଜ ପରାଜୟର ଅପମାନ ସହି ନ ପାରି ସମ୍ରାଟ ଓ ପରିବ୍ରାଜକଙ୍କୁ କଟୁ ସମାଲୋଚନା କଲେ । ଏପରିକି ବାଳକମାନଙ୍କ ଭିତରେ ବି ଏ ବିଷୟରେ ଆଲୋଚନା ଚାଲିଲା ।

ଅସ୍ମିମ୍ କହିଲେ, “ଏହି ବିଦେଶୀ ପଣ୍ଡିତଙ୍କୁ ବିରୋଧ କରିବାକୁ କେହି ସାହସ କରୁନାହାନ୍ତି । ସମସ୍ତଙ୍କର ଭୟ, କାଳେ ସମ୍ରାଟ ହର୍ଷ ବିରୋଧ କରିବା ଲୋକଙ୍କୁ ଦଣ୍ଡ ଦେବେ ।”

ପୁଣ୍ଡ୍ରକ କହିଲେ, “ମୋର ବାପା, କବି ବାଣଭଟ୍ଟ, କାମରୂପର ଶାସକ—ଏମାନେ କେହି ବୌଦ୍ଧ ଧର୍ମ ଗ୍ରହଣ କରିନାହାନ୍ତି । ସେମାନେ ସମସ୍ତେ ନୈଷ୍ଠିକ ବ୍ରାହ୍ମଣ । ତେଣୁ କୌଣସି ସାଧୁଲୋକ ଶାସ୍ତିକୁ ଡରିବାର କିଛି କାରଣ ନାହିଁ । କଥା ହେଉଛି, ହୁଏନ୍ ତ୍ସାଙ୍ଗ୍ ଜଣେ ପ୍ରକୃତ ପଣ୍ଡିତ । ଶିଖିବାରେ ଓ ଶିଖାଇବାରେ ହିଁ ତାଙ୍କର ପ୍ରକୃତ ଆନନ୍ଦ ।”

ବର୍ଷକ ପରେ ହ୍ୟୁଆନ୍ ତ୍ସାଙ୍ଗ ନିଜ ଦେଶକୁ ଫେରିବା ପାଇଁ ପ୍ରସ୍ତୁତ ହେଲେ । ପ୍ରବକ ଠନହେଁ ତାଙ୍କଠାରୁ ଆଶୀର୍ବାଦ ଲାଭ ପାଇଁ ଯାଇ ପହଞ୍ଚିଲେ ।

ପୁଣ୍ଡ୍ରରୀକ କହିଲେ, "ମହାଶୟ ! ଆପଣ କଣ ଆଉ ରହିବେ ନାହିଁ ? ଶୁଣାଯାଉଛି ଯେ, ଆମ ସମ୍ରାଟ୍ ଓ ରାଜା ଭାସ୍କର ଆପଣଙ୍କୁ ରହିବାକୁ ଅନୁରୋଧ କରୁଛନ୍ତି ।"

ବିଦେଶୀ ପଣ୍ଡିତ କହିଲେ, "ସମସ୍ତେ ମୋ ପ୍ରତି ଅତ୍ୟନ୍ତ ଦୟା ଓ ଶ୍ରଦ୍ଧା ପ୍ରଦର୍ଶନ କରିଛନ୍ତି; କିନ୍ତୁ ମୁଁ ଯେଉଁ ରତ୍ନ ସନ୍ଧାନରେ ଆସିଥିଲି, ତାକୁ ନେଇ ମୋ ନିଜ ଦେଶରେ ପହଞ୍ଚାଇବାକୁ ହେବ ।"



ଅସୁମ୍ କହିଲେ, "ଆପଣ ଫେରିବାବେଳେ ସମ୍ରାଟ୍ ଆପଣଙ୍କୁ ଅନେକ ଉପହାର ଦେବେ ।"

ବିଦେଶୀ ପଣ୍ଡିତ ଉତ୍ତର ଦେଲେ, "କୌଣସି ତୀର୍ଥଯାତ୍ରୀ ବ୍ୟକ୍ତିଗତ ଉପହାର ଗ୍ରହଣ କରନ୍ତି ନାହିଁ । ମୁଁ ମୋର ଆଶ୍ରମ ଓ ଦେଶବାସୀଙ୍କ ପାଇଁ ଅନେକ ମୂଲ୍ୟବାନ୍ ବସ୍ତୁ ନେଇଯାଉଛି, ଯଥା—ଛ'ଶହ ପଚାଶରୁ ଅଧିକ ପାଣ୍ଡୁଲିପି ଏବଂ ବୁଦ୍ଧଙ୍କର ଅନେକ ମୂର୍ତ୍ତି ଓ ସ୍ମୃତିଫଳକ ।"

"ଆପଣ କଣ କୌଣସି ଭ୍ରମଣକାରୀ ଦଳ ପାଇଁ ଅପେକ୍ଷା କରିବେ ?" ବସୁଭୂତ ପ୍ରଶ୍ନ କଲେ ।

"ନା, ମୁଁ ଯେମିତି ଏକା ଆସିଥିଲି, ସେମିତି ଏକା ଫେରିବି । ଅବଶ୍ୟ ଉତ୍ତରାଞ୍ଚଳର ଶାସକମାନଙ୍କ ପାଖକୁ ଧଳା କନାରେ ଲେଖାହୋଇଥିବା ଓ ସମ୍ରାଟଙ୍କ ଲାଲମୁଦ ଦିଆ କେତୋଟି ଚିଠି ନେଇ ଯାଉଛି । ହୁଏତ କିଛି ସାହାଯ୍ୟ ଦରକାର ହୋଇପାରେ ।" ୟୁଆନ୍ ଚୁଆଙ୍ଗ୍ କହିଲେ ।

ବସୁଭୂତ ପଚାରିଲେ, "ଆପଣ ଆଉ ଥରେ ଆମ ଦେଶକୁ ଆସିବେ ତ ? ଯେତେ ଦୂରରେ ଥିଲେ ଆପଣଙ୍କ ଦର୍ଶନ ପାଇଁ ମୁଁ ନିଶ୍ଚୟ ଆସିବି ।"

ବିଦେଶୀ ପଣ୍ଡିତ ୟୁଆନ୍ ଚୁଆଙ୍ଗ୍ କହିଲେ, "ଚଉଦ ବର୍ଷ ହେଲାଣି ମୁଁ ମୋ ଦେଶ ବାହାରେ ରହିଛି । ମୋ ଜୀବନର ଅବଶିଷ୍ଟ ସମୟ ସାଙ୍ଗରେ ନେଉଥିବା ଗ୍ରନ୍ଥମାନଙ୍କର ଅନୁବାଦ ଓ ବ୍ୟାଖ୍ୟା କରିବାରେ କଟାଇବି; କିନ୍ତୁ ବୁଦ୍ଧଙ୍କ ଦେଶରେ ମୁଁ ଯେଉଁ ଅଭ୍ୟର୍ଥନା ଓ ଶ୍ରଦ୍ଧା ପାଇଛି, ତାହା ମୋର ସାରା ଜୀବନ ମନେରହିବ ।"

# ଏହି ପୁସ୍ତକମାଳାରେ ପ୍ରକାଶିତ ଅନ୍ୟାନ୍ୟ ପୁସ୍ତକ

| | ଲେଖକ | ଅନୁବାଦକ |
|---|---|---|
| ବାପୁ (ଦୁଇ ରଙ୍ଗରେ) | – ଏଫ୍. ଜି. ପିଅର୍ସ | – ଦେବେନ୍ଦ୍ର ଶତପଥୀ |
| କାଶ୍ମୀର | – ମାନ ସିଂ | – ପଟାନ୍ ଦାସ (ଆକାଶବାଣୀ) |
| ପକ୍ଷୀ ଜଗତ | – ଜମାଲ ଆରା | – ଅବକାଶ ଜେନା |
| ଆମ ନଦୀମାନଙ୍କର କାହାଣୀ (ପ୍ରଥମ ଖଣ୍ଡ) | – ଲୀଳା ମଜୁମଦାର | – ଦେବେନ୍ଦ୍ର ଶତପଥୀ |
| ଆମ ନଦୀମାନଙ୍କର କାହାଣୀ (ଦ୍ୱିତୀୟ ଖଣ୍ଡ) | – ଅରୁ. ଭଟ୍ଟାଚାର୍ଯ୍ୟ | – ନୃସିଂହ ଚରଣ ସାହୁ |
| ଶୁଙ୍ଗୁ ଶୁଙ୍ଗ | – ଜାନ ସିଂ | – ଜାନକୀବଲ୍ଲଭ ମହାନ୍ତି |
| ଅଜେଜ ଓ ଅନନ୍ତର କାହାଣୀ | – ମନୋଜ ଦାସ | – ମନୋଜ ଦାସ |
| ସ୍ୱର୍ଗ ଭ୍ରମଣ | – ଭାରତୀ ଭଗତ୍ | – ପଟାନ୍ ଦାସ (ଆକାଶବାଣୀ) |
| ସେମାନେ ଦେଖିଥିବା ଭାରତ | – କେ. ସି. ଖାନ୍ନା | – ଦେବେନ୍ଦ୍ର ଶତପଥୀ |
| ଆମ ରେଳପଥ | – ଜଗଜିତ୍ ସିଂ | – ଅବକାଶ ଜେନା |
| ଚାଲ ନାଟକ କରିବା | – ଉମା ଆନନ୍ଦ | – ଚିତ୍ତରଞ୍ଜନ ଦାସ |
| ଆମ ସ୍ୱରାଜ୍ୟ କାହାଣୀ (ପ୍ରଥମ ଖଣ୍ଡ) | – ବିଷ୍ଣୁ ପ୍ରଭାକର | – ବିଜୟ କୁମାର ଦାଶ |
| ଆମ ସ୍ୱରାଜ୍ୟ କାହାଣୀ (ଦ୍ୱିତୀୟ ଖଣ୍ଡ) | – ସୁମଙ୍ଗଲ୍ ପ୍ରକାଶ | – ସୁଲୋଚନା ପଟ୍ଟନାୟକ |
| ବିଲେଇ ନାନୀର ପରିବାର | – ଏମ୍. ଡି. ଚତୁର୍ବେଦୀ | – ଚଉଧୁରୀ ହେମକାନ୍ତ ମିଶ୍ର |
| ବହୁତ ଦିନ ତଳେ (ପ୍ରଥମ ଖଣ୍ଡ) | – ଏମ୍. ସେକ୍‌ସି ଓ ପି. ଏମ୍. ଯୋଶୀ | – କାଳିନ୍ଦୀ ଚରଣ ପାଣିଗ୍ରାହୀ |
| ବହୁତ ଦିନ ତଳେ (ଦ୍ୱିତୀୟ ଖଣ୍ଡ) | – " | – ବିରେନ୍ଦ୍ର ନାରାୟଣ ପଟ୍ଟନାୟକ |
| ଯୁଗ ଯୁଗର କାହାଣୀ | – ଶାନ୍ତା ରଙ୍ଗାସ୍ୱାମୀ | – ବିଜୟ କୁମାର ଦାଶ |
| ଲେହରୀ ଓ ନାର୍ଦ୍ଧିପ | – କୃଷ୍ଣ ଚୈତନ୍ୟ | – ଜ୍ୟୋତ୍ସ୍ନା ମିଶ୍ର |
| ଜଳପାନି | – ଲୀଳା ମଜୁମଦାର | – ଜୀବନ ପାଣି |
| ସାହସିକତାର କାହାଣୀ | – ସଚ୍ଚେନ୍ଦ୍ର ଅବସ୍ଥୀ | – ସ୍ନେହଲତା ରାୟ |
| ଫୁଲ ଓ ମହୁମାଛି | – ଅଶୋକ ଦାବର୍ | – ବିଜୟ କୁମାର ଦାଶ |
| ମୋର | – ମୁଲ୍କରାଜ ଆନନ୍ଦ | – ସ୍ନେହଲତା ରାୟ |
| ଭାରତରେ ହରିଶେଳ | – ସରଚିନ୍ଦ୍ର ସାନ୍ୟାଲ | – ନୃସିଂହ ପ୍ରସାଦ ମିଶ୍ର |
| ଅଯୋଧ୍ୟାର ଯୁବରାଜ | – ହଂସା ମେହେତା | – ମିତ୍ରା ଦାସ |
| ଅମର ସାହିତ୍ୟ | – ମନୋଜ ଦାସ | – ମନୋଜ ଦାସ |
| ବୃକ୍ଷ ଜଗତ | – ରସ୍କିନ୍ ବଣ୍ଡ | – ଶ୍ରୀଧର ଦାସ |
| ଅଲିମ୍ପିକ୍ସ | – ମେଲଭିଲ୍ ଡିମେଲୋ | – ରାମଚନ୍ଦ୍ର ଦାସ |
| ସୋନାର ସାହସ | – ତାରା ତିୱାରୀ | – ଶାନ୍ତି ଦାସ |
| ସବୁରି ସାଥୀ, ସବୁରି ମିତ | – କମଳାକର ଯୋଶୀ | – ଚନ୍ଦ୍ରିକା ମହାପାତ୍ର |
| ରୂପା | – ମିହି ପଟେଲ୍ | – ବିଜୟକୁମାର ଦାଶ |
| କେତୋଟି ପ୍ରଭାବଶାଳୀ ଉଦ୍ଭାବନ (ଦୁଇ ରଙ୍ଗରେ) | – ମିର୍ ନଜାବତ୍ ଅଲି | – ମନୋହର ପ୍ରସାଦ ସିଂହ |
| ଆସ ଯିବା ଦେଖି ଚିଡ଼ିଆଖାନା | – ରସ୍କିନ୍ ବଣ୍ଡ | – ରମାପ୍ରସାଦ ମହାନ୍ତି |
| ଲେନ୍ସର କାହାଣୀ | – ତ୍ରିଷା ସତ୍ୟାନନ୍ଦ | – ବଲେନ୍ଦ୍ରକୃଷ୍ଣ ଧର |
| କ୍ରିକେଟ୍ | – ବିଜୟ ମର୍ଚ୍ଚାଣ୍ଟ | – ରବି ସାହୁ |
| ଡାକଟିକଟର ମନୋହର କାହାଣୀ | – ସତ୍ୟ ପ୍ରସାଦ ସ୍ୱଦୋର୍ଦ୍ଧୀ | – ସୁରେନ୍ଦ୍ର ଚନ୍ଦ୍ର ମହାନ୍ତି |
| ଭାରତ କିପରି ସ୍ୱାଧୀନତା ପାଇଲା | – କୃଷ୍ଣ ଚୈତନ | – ରାମ ପ୍ରସାଦ ମହାନ୍ତି |
| ଏକ କବିର ସ୍ୱପ୍ନ | – ମହାଶ୍ୱେତା ଦେବୀ | – ଚିତ୍ତରଞ୍ଜନ ଦାସ |
| ଆମ ନୌବାହିନୀ | – ଆର୍. ଏନ୍. ସୁରୀ | – ନୃସିଂହ ଚରଣ ସାହୁ |
| ସିନେମା କେମିତି ହୁଏ | – ଖ୍ୱାଜା ଅହମଦ୍ ଅବ୍ବାସ | – ଘନଶ୍ୟାମ ମହାପାତ୍ର |
| ଆମ ବାୟୁ ସେନା | – ପି. ଏଲ୍. ଘାରକ୍ପୁର୍ | – ନିକୁଞ୍ଜ କିଶୋର କାନୁନ୍‌ଗୋ |
| ପ୍ରେମଚନ୍ଦ | – ଅମୃତ ରାୟ | – ପ୍ରଫୁଲ୍ଲ କୁମାର ତ୍ରିପାଠୀ |
| ଚିଆର୍ ରଥ | – ଉମା ଆନନ୍ଦ | – ରାମ ପ୍ରସାଦ ମହାନ୍ତି |

ପ୍ରତ୍ୟେକ ବହିର ମୂଲ୍ୟ ଟ 2.50

ଏହି ପୁସ୍ତକଗୁଡ଼ିକ ୧୨ଟି ଭାରତୀୟ ଭାଷା ଓ ଇଂରାଜୀରେ ମିଳୁଅଛି ।

